# ମହାକବି କାଳିଦାସ




ଲେଖକ—

ଶ୍ରୀ ଦେବରାଜ ତ୍ରିପାଠୀ

# ମହାକବି କାଳିଦାସ

ଲେଖକ—

## ଶ୍ରୀ ଦେବରାଜ ତ୍ରିପାଠୀ

ରାଜ୍ୟ ପୁରସ୍କାର ପ୍ରାପ୍ତ ପ୍ରଧାନ ଶିକ୍ଷକ ତଥା ବୋର୍ଡ଼ ଅଫ୍ ସେକେଣ୍ଡାରୀ ଏଡୁକେସନ ଓଡ଼ିଶାର ଭୂତପୂର୍ବ ସଭ୍ୟ ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଭୂତପୂର୍ବ ସିନେଟ ସଭ୍ୟ ଏବଂ ମୁକ୍ତ ଲେଖକ ଗୋଷ୍ଠି ସାହିତ୍ୟ ସଂସ୍ଥାର ସଂସ୍ଥାପକ ତଥା କାବ୍ୟ, କବିତା, ଭଜନ ଗଳ୍ପ, ନାଟକ, ପ୍ରବନ୍ଧ, ସମାଲୋଚନା, ଭାଷ୍ୟ, ସଂଚୟନ, ଜୀବନୀ, ଭ୍ରମଣ ବୃତ୍ତାନ୍ତ, ଉପାସନା ପ୍ରଭୃତି ଶତାଧିକ ଗ୍ରନ୍ଥର ପ୍ରଣେତା ।

କୃପାସିନ୍ଧୁପୁର । ଗଞ୍ଜାମ

ପ୍ରକାଶକ ।

ଶ୍ରୀ ବିଷ୍ଣୁ ପ୍ରସାଦ ତ୍ରିପାଠୀ

ତ୍ରିପାଠୀ ପ୍ରକାଶନୀ,

କୃପାସିନ୍ଧୁପୁର (ଗଞ୍ଜାମ)

ପ୍ରାପ୍ତି ସ୍ଥାନ—

ତ୍ରିପାଠୀ ପୁସ୍ତକାଳୟ

ବାଲୁଙ୍କେଶ୍ୱର ବଜାର

ଶିତଳମଠ ସାହି

ବ୍ରହ୍ମପୁର—୨

ପ୍ରଥମ ମୁଦ୍ରଣ

୧୯୮୪

ମୁଦ୍ରଣ ଶ୍ରୀ ପ୍ରିଣ୍ଟିଙ୍ଗ ପ୍ରେସ, ବ୍ରହ୍ମପୁର ।

ମୂଲ୍ୟ—୬-୦୦ ( ଛଅଟଙ୍କାମାତ୍ର )

# ଆଲେଖ୍ୟ

ସମଗ୍ର ବିଶ୍ୱର ଜଣେ ମହାମାନବ ଭାବରେ କବି କାଳିଦାସ ସୁପରିଚିତ ଅଟନ୍ତି । କବିଙ୍କର ମହାନ ପ୍ରତିଭା ଆଗରେ ସମଗ୍ର ବିଶ୍ୱର ସମସ୍ତ ଜ୍ଞାନ ପୁରୁଷ ନତ ମସ୍ତକ ହୋଇ କବିଙ୍କର ବିଶ୍ୱବିଖ୍ୟାତ କବିତା ରଚନା ପଢି ତାଙ୍କୁ ଭୂରି ଭୂରି ପ୍ରଶଂସା କରୁ ଅଛନ୍ତି । କବି ଭଗବତୀ ସରସ୍ୱତୀଙ୍କ ଅପାର କରୁଣାରୁ ଯେଉଁ ମହାନ ସୃଜନୀ ଶକ୍ତି ଲାଭ କରି ଅଛନ୍ତି ତାହା ସମଗ୍ର ମାନବ ଜାତିକୁ ଚମତ୍କାର କରିଦିଏ । ସେ ଏକା ଧାରରେ ଆଶୁକବି ଓ ମହାନ ପଣ୍ଡିତ ଥିଲେ । ସେ ଯେଉଁ କବିତାମାନ ମୁଖେ ମୁଖେ ଗାଇ ଯାଉଥିଲେ ସେ ସବୁ ଯେପରି ଶବ୍ଦବହୁଳ ସେପରି ଆଳଙ୍କାରିକ ଥିଲା । ସେହି ଆଳଙ୍କାରିକ କବିତାମାନ ବିଶ୍ୱ, ଭାରତକୁ ଶବ୍ଦବହୁଳ ଓ ବୁଦ୍ଧିବନ୍ତ କରି କବିଙ୍କୁ ଅମର ଆସନରେ ଅଳଙ୍କୃତ କରିଅଛି । କବି ସ୍ୱୀୟ ସାଧନା ଓ ପ୍ରଚେଷ୍ଟା ଦ୍ୱାରା କିପରି ଅଜ୍ଞରୁ ବିଜ୍ଞ ହୋଇଲେ ସେହି କଥା ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ । ଏଣୁ କବି କିପରି ମହା ମୂର୍ଖରୁ ମହା କବି ହୋଇଲେ ସେହି କଥା ଜାଣିବା ପାଇଁ ସକଳଙ୍କର ଆଗ୍ରହ ଥାଏ । ଏଣୁ ଏହି କ୍ଷୁଦ୍ର ପୁସ୍ତକରେ କବିଙ୍କର ସଂକ୍ଷେପ ପରିଚୟ ପ୍ରଦାନ କରୁଛି ମାତ୍ର ।

ବିନୀତ ଲେଖକ,
ଶ୍ରୀ ଦେବରାଜ ତ୍ରିପାଠୀ

# ଏହି ଲେଖକଙ୍କ ଅନ୍ୟ ସକଳ ଶ୍ରେଷ୍ଠ କୃତି

ନାଟକ—ସନ୍ଦେହ, ପ୍ରତିବନ୍ଧକ, ମହାଦାନୀ ହରିଶ୍ଚନ୍ଦ୍ର, ବିଜୟୀ ବିଶ୍ୱାମିତ୍ର ଉତ୍କଳ ଖଣ୍ଡ ସମୂମଣି, ଜୟ ଜଗନ୍ନାଥ, ଭକ୍ତକବି, ଜୟଦେବ

ଏକାଙ୍କିକା—ଜୀବନ୍ତଙ୍କ ରଣ ଆହ୍ୱାନ, ବୈଜ୍ଞାନିକ, ଅପମାନ ବ୍ରହ୍ମଶାପ, ପ୍ରତିଶୋଧ, ମୁକୁଟ ଭିକ୍ଷା, ଜନନୀର ଆହ୍ୱାନ ମୁକ୍ତିବନ୍ଧନ କୁନାଳ, ବିପ୍ର ହିରଣ୍ୟଦାସ, ମୟୂରଧ୍ୱଜ, ଶ୍ରବଣ କୁମାର ।

କାବ୍ୟ—ଅନନ୍ତ୍ରାପ ବିସର୍ଜନ, ବାଳଲୀଳା, ଅନୁଭୂତି ତରଙ୍ଗିଣୀ ପରିଣୟ ପରିଣତି, ସତୀ ସାବିତ୍ରୀ କଙ୍କାଳ, ସମର ସଙ୍ଗୀତ ।

କବିତା ବଳୀ—ନବମ ସାଲ, ନିଷେଧିତା ଆହ୍ୱାନ, ପ୍ରତିଘାତ, ଏତ ମୋର ସତ୍ୟର ଭୂମିକା, ବିଭ୍ରାନ୍ତ କବିତା, ବିଭ୍ରାଟ କବିତା, ଜୀବନ - ତରଙ୍ଗ, ନୀତି ନିର୍ଯ୍ୟାସ, ପଲ୍ଲୀ ମୟୂ ଭଜନା ବଳୀ, କବିତା ନିକୁଞ୍ଜ ଭୂସ୍ୱର୍ଗ ଉତ୍କଳ ଗୁଞ୍ଜନ, ବୈଜୟନ୍ତ, କମ୍ପଦନ୍ତ, ଅସରନ୍ତ, ଶଙ୍ଖମହୁରୀ, ଅନାବନା କବିତା, ଦେବରାଜ ଚିତ୍ତସାର ।

ଗଳ୍ପ—ହୋଲିରଦାଗ, କାପାଳିକ, ଭ୍ରଷ୍ଟ ଉପହାର, ରକ୍ତ ଭିକ୍ଷା, କଳବେଲ ଓ ବଳା ସୁନାକଙ୍କଣ, ପାଠୁଆ ଝିଅ, ଫେରିଆ ।

ଜୀବନୀ—ସ୍ୱାମୀ ବିବେକାନନ୍ଦ, ଠାକୁର ନିରମାନନ୍ଦ, ଯୁଗାବତାର ସାଇବାବା, ସନ୍ଥକବି ସୁରଦାସ, ସନ୍ଥକବି ତୁଳସିଦାସ, ସନ୍ଥକବି ବିଲ୍ୱ ମଙ୍ଗଳ, ମହାକବି କାଳିଦାସ, ମୋ ନିଜକଥା ।

ପ୍ରବନ୍ଧ—ବିରହ ଜୀବଜନ୍ତୁ ୧ମ, ୨ୟ, ବିଚିତ୍ର ଦେଶ ଓ ତାର ଅଧିବାସୀଙ୍କ କାହାଣୀ, ଶିଳ୍ପାଧାର, ଯାହାକଲେ ଦିନଯାଏ ଭଲେ ଭଲେ ।

ସମାଲୋଚନା—ଓଡ଼ିଆ ଲୋକଗୀତ, ତଗଡ଼ମାଳ ।

ସଂଗ୍ରହ—ସରସ ସୁବଧ ଉଗମାଳିକା, ମନ୍ତ୍ରଯନ୍ତ୍ର ଉପାଗୁର, ଗାୟତ୍ରୀ ଉପାସନା, ସବ୍ୟସଙ୍କ, ପୂଜାବିଧି, ଜ୍ୟୋତିଷ ସଂଗ୍ରହ, ଅନୁଭୂତି- ଘରୋଇ ଚିକିତ୍ସା, ଜ୍ଞାନଦୀପ ବିକାଶ, ପ୍ରବଚନ ।

ଭାଷ୍ୟ—ଗୀତା ଜ୍ଞାନ ମହୋଦଧି

୧ମ ଭାଗ—କର୍ମ ଯୋଗ, ୨ୟ ଭାଗ—ଭକ୍ତିଯୋଗ

୩ୟ ଭାଗ—ଜ୍ଞାନ ଯୋଗ ।

# ମହାକବି କାଳିଦାସ

ଗୌଡ଼ ଦେଶର ରାଜା ମାଣିକେଶ୍ୱରଙ୍କ ରାଜ ଭବନରେ ବହୁ ପଣ୍ଡିତଙ୍କ ସମାବେଶ । ଭାରତର ବିଭିନ୍ନ ଦେଶରୁ ଶହ ଶହ ଦିଗ୍‌ବିଜୟୀ ପଣ୍ଡିତ ମହାରାଜଙ୍କ ନିମନ୍ତ୍ରଣ ହେତୁ ଗୌଡ଼ର ରାଜଭବନରେ ଉପସ୍ଥିତ ହୋଇଛନ୍ତି । ଜଣଙ୍କ ପରେ ଜଣେ ପଣ୍ଡିତଙ୍କୁ ପରୀକ୍ଷା ଦେବାକୁ ହୋଇଛି । ମହାରାଜାଙ୍କର ଏକମାତ୍ର କନ୍ୟା ରତ୍ନାବତୀଙ୍କ ସହିତ । ପଣ୍ଡିତମାନେ ଯେ କେବଳ ରତ୍ନାବତୀଙ୍କର ସମସ୍ତ ଜଟିଳ ପ୍ରଶ୍ନର ଉତ୍ତର ଦେଉଛନ୍ତି ତାହା ନୁହେଁ, ସେମାନେ ମଧ୍ୟ ଅନେକ ପ୍ରଶ୍ନ ପଚାରୁଛନ୍ତି ରାଜଜେମାଙ୍କୁ । ଆଶ୍ଚର୍ଯ୍ୟର ବିଷୟ ସବୁ ପ୍ରଶ୍ନର ଉତ୍ତର ରାଜଜେମା ନିଜେ ଦେଇ ପୁନର୍ବାର ପ୍ରଶ୍ନ କରନ୍ତି ପଣ୍ଡିତମାନଙ୍କୁ । ବିଭିନ୍ନ ଶାସ୍ତ୍ର ଉପରେ ଗମ୍ଭୀର ଆଲୋଚନା କରି ମଧ୍ୟ ରତ୍ନାବତୀଙ୍କୁ ପରାସ୍ତ କରିପାରୁ ନାହାନ୍ତି । ବରଂ ସେମାନେ ଜଣେ ଅଳ୍ପ ବୟସ୍କା ନାରୀ ଦ୍ୱାରା ପରାଜିତ ହୋଇ ରାଜଭବନରୁ ଲଜ୍ଜା ଅପମାନରେ ନିଜର ମୁହଁ ଲୁଚାଇ ଚାଲି ଯାଉଛନ୍ତି ।

ରତ୍ନାବତୀ କେବଳ ଜ୍ଞାନୀ ନଥିଲେ, ସେ ଥିଲେ ବହୁ ଶାସ୍ତ୍ରଦର୍ଶୀ । ତେଣୁ ସେ ଥିଲେ ଜ୍ଞାନୀମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ । ସକଳ ଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ ମଧ୍ୟ ରତ୍ନାବତୀଙ୍କ ବିବାହ ବୟସ ଯେପରି ଉପସ୍ଥିତ ହେଲା, ମହାରାଜା ମାଣିକେଶ୍ୱର ନିଜ ଝିଅପାଇଁ ଉପଯୁକ୍ତ ବରପାତ୍ର ଅନୁସନ୍ଧାନ କରିବାରେ ମନ ନିୟୋଗ କଲେ । ଏତିକିବେଳେ ରତ୍ନାବତୀ ପିତାଙ୍କୁ ନିଜର

ମନ କଥା ଜଣାଇ କହିଲେ ଯେ, ଯେଉଁ ପଣ୍ଡିତ ତାଙ୍କୁ ଶାସ୍ତ୍ର ବିବାଦାନୁବାଦରେ ପରାସ୍ତ କରିଦେବେ । ସେ ତାଙ୍କୁ ପତିରୂପେ ବରଣ କରି ତାଙ୍କର ଗଳାରେ ବରଣମାଳା ଦେବେ । ସେ ଜଣେ ପଣ୍ଡିତା ରମଣୀ ଥିବା ଯୋଗୁଁ କୌଣସି ବଳଶାଳୀ, ବିକ୍ରମଶାଳୀ ବା ବିଭବଶାଳୀ ରାଜାଙ୍କୁ ବିବାହ କରିବା ନିମନ୍ତେ ଇଚ୍ଛା ପ୍ରକାଶ ନକରି କେବଳ ତାଙ୍କଠାରୁ ବୁଦ୍ଧି ବିଦ୍ୟାରେ ଅଧିକ ଥିବା ବ୍ୟକ୍ତିଙ୍କୁ ହିଁ ସ୍ୱାମୀ ଭାବରେ ବରଣ କରିବାକୁ ମନ କରିଥିଲେ ।

## ଶାସ୍ତ୍ର ଚର୍ଚ୍ଚାର ଦାରୁଣ ଆଘାତ :—

ପ୍ରିୟ କନ୍ୟାଙ୍କୁ ସୁଖି କରାଇବା ନିମନ୍ତେ ରାଜା ମଣିକେଶ୍ୱର ବିଭିନ୍ନ ଦେଶକୁ ଦୂତ ପଠାଇ ମହା ମହା ପଣ୍ଡିତମାନଙ୍କୁ ନିଜ କନ୍ୟା ସହିତ ବିଦ୍ୟାଚର୍ଚ୍ଚା କରିବା ନିମନ୍ତେ ନିମନ୍ତ୍ରଣ କରୁଥିଲେ । ରାଜ କନ୍ୟାଙ୍କୁ ଶାସ୍ତ୍ରରେ ପରାଜିତ କରିବା ନିମନ୍ତେ ଯେଉଁ ପଣ୍ଡିତମାନେ ବିଭିନ୍ନ ଦେଶରୁ ଆସୁଥିଲେ ରାଜା ମାଣିକେଶ୍ୱର ସେମାନଙ୍କୁ ଖୁବ୍ ସମ୍ମାନ କରି ରାଜ ସଭାକୁ ନେଇ ଯାଉଥିଲେ । କିନ୍ତୁ ପଦେ ଦୁଇପଦ ଯୁକ୍ତି ତର୍କ ପରେ ପଣ୍ଡିତମାନେ ରତ୍ନାବତୀଙ୍କ ଦ୍ୱାରା ପରାଜିତ ହୋଇ ଘୋର ଅପମାନରେ ମୁହଁ ଅବନତ କରି ଶାସ୍ତ୍ର ଚର୍ଚ୍ଚାରୁ ବିରତ ହୋଇ ନିଜଧାମକୁ ଫେରି ଯାଉଥିଲେ । ଏହି ଶାସ୍ତ୍ର ଚର୍ଚ୍ଚା ବହୁ ପଣ୍ଡିତଙ୍କ ମନରେ ଦାରୁଣ ଆଘାତ ସୃଷ୍ଟି କରୁଥିଲା । ଜଣେ ନାରୀ ଦ୍ୱାରା ମହାନ୍ ଦିଗ୍‌ବିଜୟୀ ପଣ୍ଡିତମାନେ ପରାଜିତ ହେଉଥିବା ଯୋଗୁଁ ଏହି ଅପମାନ ସେମାନଙ୍କୁ ଅସହ୍ୟ ବୋଧ ହେଉଥିଲା । ସେମାନେ ସମବେତ ହୋଇ ଏହି ଦାରୁଣ ଅପମାନର ପ୍ରତିଶୋଧ ନେବାପାଇଁ ଉପାୟ ଚିନ୍ତାକଲେ ।

ଅମ୍ଭମାନେ ରାଜବାଳା ରତ୍ନାବତୀ ସହିତ ଯଦି ସେମାନେ କୌଣସି ଏକ ମହାମୂର୍ଖଙ୍କୁ କୌଶଳକ୍ରମେ ବିବାହ କରାଇ ଦେଇ ପାରନ୍ତି ତେବେ ସେମାନେ ରତ୍ନାବତୀଙ୍କୁ ଉପଯୁକ୍ତ ଶିକ୍ଷା ଦେଇଛନ୍ତି ବୋଲି ଆନନ୍ଦ ଲାଭ କରିବେ । ସବୁ ପଣ୍ଡିତଙ୍କ ମନକୁ ଏହି କଥା ପାଇବା ପରେ ସେମାନେ ଅତି ଉତ୍ସାହରେ ଦଳ ଦଳ ହୋଇ ଜଣେ ମୂର୍ଖ ଯୁବକକୁ ଖୋଜି ବାହାର କରିବା ନିମନ୍ତେ ଗ୍ରାମ ସହର ସର୍ବତ୍ର ଭ୍ରମଣ କଲେ । ସୌଭାଗ୍ୟକ୍ରମେ ଦଳେ ପଣ୍ଡିତ ଉଜ୍ଜୟିନୀର ନିକଟସ୍ଥ ପୌଣ୍ଡ୍ର ନାମକ ଏକ ଗ୍ରାମରେ ପ୍ରବେଶ କଲେ । ପଥ ପାର୍ଶ୍ୱରେ ଗୋଟିଏ ବିରାଟ ବୃକ୍ଷର ଏକ ବିରାଟ ଶାଖାକୁ କୁଠାର ଦ୍ୱାରା କେହି ଜଣେ କର୍ତ୍ତନ କରୁଥିବା ଶବ୍ଦ ଶୁଣି ସେମାନଙ୍କ ମଧ୍ୟରୁ ଜଣେ ପଣ୍ଡିତ ବୃକ୍ଷର ଉପରକୁ ଦୃଷ୍ଟି ନିକ୍ଷେପ କରି ଅତି ଆନନ୍ଦରେ ଚିତ୍କାର କଲେ—ଏଇ ଦେଖ, ପରମେଶ୍ୱର ଏତେ ଦିନ ପରେ ଆମ୍ଭମାନଙ୍କୁ ଉପଯୁକ୍ତ ପାତ୍ରର ସନ୍ଧାନ କରାଇ ଅଛନ୍ତି ଏଇ ଉଜ୍ଜୟିନୀର ନିଭୃତ ପଲ୍ଲୀରେ । ହୋଇ ଦେଖ, ଏଇ ଯୁବକଟି ମୂର୍ଖ । ଆମେ ଆଉ ଅଧିକ ଦୂର ଯିବା ଦରକାର ନାହିଁ ।

ପଣ୍ଡିତମାନେ ଦେଖିଲେ ଜଣେ ଯୁବକ ଗୋଟିଏ ଶାଖାର ଅଗ୍ର ଭାଗରେ ଠିଆ ହୋଇ କୁଠାରରେ ଶାଖାର ମୂଳଦେଶକୁ କର୍ତ୍ତନ କରୁଛି । ସେମାନଙ୍କ ମଧ୍ୟରୁ କେହି କେହି ଯୁବକର ଭବିଷ୍ୟତ ଦୁରବସ୍ଥା ଚିନ୍ତା କରି ସେପରି କରିବା ଦ୍ୱାରା ସେ ଡାଳ ସହିତ ତଳେ ପଡିଯିବା କଥା ବୁଝାଇ ଏଭଳି ମୂର୍ଖ କର୍ମରୁ ନିବୃତ୍ତ ହେବା ନିମନ୍ତେ କେତେ ବୁଝାଇଲେ । କିନ୍ତୁ ମୂର୍ଖ ତଳେ ନ ପଡିବା ଯାଏଁ ପଣ୍ଡିତଙ୍କ କଥା ବୁଝିପାରୁ ନଥିଲା । ତେଣୁ ସେ କାହାର ବାରଣରେ କର୍ଣ୍ଣପାତ ନକରି ନିଜର କର୍ତ୍ତବ୍ୟ କରି ଚାଲିଥାଏ । ହଠାତ୍ ଭୀଷଣ ଶବ୍ଦ କରି ଡାଳଟି ସେହି ଯୁବକକୁ ସାଥିରେ ଧରି

ବୃକ୍ଷରୁ ଛିଣ୍ଡି ପଡ଼ିଲା । ପଣ୍ଡିତମାନେ ଧାଇଁଯାଇ ଯୁବକଟିକୁ ଉଠାଇଲେ । ଯୁବକଟିର ବୁଦ୍ଧି ଆସିଲା ।

## ପରିଚୟ ପାଇଲେ :—

ବର୍ତ୍ତମାନ ପଣ୍ଡିତମାନେ ସ୍ଥିର କଲେ ଯେ ଏହି ଯୁବକଟି ରତ୍ନାବତୀର ଉପଯୁକ୍ତ ବରପାତ୍ର ହେବ । ହେଲେ ଯୁବକ ଜଣକ ଏତେ ମୂର୍ଖ ଯେ, ତାକୁ ବୁଝାଇ ଗୌଡ଼ ଦେଶ ରାଜନଗରକୁ ନେବା ସହଜ ପର ବୋଧ ହେଉନାହିଁ । ପଣ୍ଡିତମାନେ ନିଜ ନିଜର ସମସ୍ତ ବୁଦ୍ଧି ଖଟାଇ ପ୍ରଥମେ ଯୁବକଟିର ପରିଚୟ ନେଲେ । ଜାଣିଲେ ଯୁବକଟି ଅବିବାହିତ । ବିବାହ କରିବା ନିମନ୍ତେ ତାର ଘର ଇଚ୍ଛା ଅଛି । ସେ ଜଣେ ବିଧବା ବ୍ରାହ୍ମଣୀର ପୁତ୍ର । ପୁଅକୁ ଶୀଘ୍ର ବିବାହ କରାଇ ବୋହୂଟିଏ ଘରକୁ ଆଣିବାକୁ ବିଧବା ମା ବେଶି ମନରୁ ଇଚ୍ଛା କରୁଥିଲେ ସୁଦ୍ଧା ପୁଅର ମୂର୍ଖାମୀ ଦେଖି କେହି କନ୍ୟାଟିଏ ଦେବାକୁ ରାଜି ହେଉ ନାହାନ୍ତି । ପୁଣି ସେମାନେ ଅତ୍ୟନ୍ତ ଗରିବ । ଚୁଲିପାଇଁ କାଠ ନାହିଁ ବୋଲି ଯୁବକଟି ଆସିଛି ଜାଳେଣି ସଂଗ୍ରହ କରିବାକୁ । କଥା ପ୍ରସଙ୍ଗରେ ଯୁବକଟାରୁ ଏହିସବୁ ବିଷୟ ଶୁଣି ପଣ୍ଡିତମାନଙ୍କ ମନରେ ଆନନ୍ଦ ଉତ୍ସାହ ଦେଖାଗଲା । ଏହି ଯୁବକକୁ ରତ୍ନାବତୀ ସହିତ କୌଶଳକ୍ରମେ ବିବାହ କରାଇ ଦେଇ ସେମାନେ ନିଜ ଅପମାନର ପ୍ରତିଶୋଧ ନେବା ପାଇଁ ସଂକଳ୍ପ କଲେ ।

## ଗୌଡ଼ଦେଶ ଯାତ୍ରା :—

ସେମାନେ ସେହି ଯୁବକକୁ ଆଉ ଛାଡ଼ିଦେଲେ ନାହିଁ । ମଧୁର ଭାଷାରେ ନାନା ପ୍ରଲୋଭନ ଦେଖାଇ ଯୁବକଟିକୁ ବୁଝାଇ ଦେଲେ ଯେ, ସେମାନେ ଗୌଡ଼ଦେଶ ରାଜା ମାଣିକେଶ୍ୱରଙ୍କ ଏକମାତ୍ର କନ୍ୟା ରତ୍ନାବତୀ ସହିତ ତାଙ୍କର ବିବାହ କରାଇ ଦେବାକୁ ଚାହାନ୍ତି । ସେ

ଯଦି ସେମାନଙ୍କ କଥା ପ୍ରକାରେ ଚଳିବେ ତେବେ ରତ୍ନାବତୀଙ୍କୁ ବିବାହ କରି ପୃଥିବୀର ଜଣେ ଶ୍ରେଷ୍ଠ ବ୍ୟକ୍ତି ହୋଇ ପାରିବେ । ଦେଶବାସୀ ତାଙ୍କର ଗୁଣଗାନ କରିବେ । ତାଙ୍କର ନାମ ଚିର ଦିନ ପାଇଁ ଲୋକେ ସ୍ମରଣ କରିବେ । ସମସ୍ତେ ତାଙ୍କୁ ଧନ୍ୟ ଧନ୍ୟ କରିବେ ।

ଏହା ଶୁଣି ଯୁବକର ମୁଖ ଶ୍ରୀପ୍ରସନ୍ନ ଦେଖାଗଲା । ସେ ପଣ୍ଡିତମାନେ ଯେପରି କହିବେ ସେପରି କରିବାକୁ ରାଜିହେଲେ । ପଣ୍ଡିତମାନେ ଜାଣିଲେ ମୂର୍ଖର ଗଣ୍ଡି ଦୃଢ଼ । ସେ ଯଦି ରାଜି ହେଲାଣି ନିଶ୍ଚୟ ତାଙ୍କର କଥାହିଁ ଶୁଣିବ । ଏହାଜାଣି ଯୁବକଟିକୁ ସାଥିରେ ଧରି ଗୌଡ଼ ରାଜଧାନୀ ଅଭିମୁଖେ ଯାତ୍ରା କଲେ ।

ସେହି ଯୁବକଟିର ନାମ କାଳିଦାସ । ଗୌଡ଼ ରାଜଧାନୀ ନିକଟ ହେବା ମାତ୍ରେ ପଣ୍ଡିତମାନେ କାଳିଦାସଙ୍କୁ ପଟ୍ଟବସ୍ତ୍ର ପରିଧାନ ପୂର୍ବକ ପୁଷ୍ପମାଲ୍ୟରେ ବିଭୂଷିତ କରି ବୁଝାଇ ଦେଲେ ଯେ ବିବାହ ସରିବା ପର୍ଯ୍ୟନ୍ତ ସେ ଆଦୌ ମୁଖ ଖୋଲିବେ ନାହିଁ । କେହି କିଛି ପ୍ରଶ୍ନ କଲେ ତାହାଙ୍କୁ କିଛି ଉତ୍ତର ଦେବେ ନାହିଁ । ପଣ୍ଡିତମାନେ ବିବାହ ଶେଷ ପର୍ଯ୍ୟନ୍ତ ତାଙ୍କର ପାଖେ ପାଖେ ରହି ତାଙ୍କର ସମସ୍ତ ବ୍ୟବସ୍ଥା କରିବେ ।

କାଳିଦାସ ରତ୍ନାବତୀଙ୍କୁ ବିବାହ ହେବେ ବୋଲି ଶୁଣିଲାଠାରୁ ପଣ୍ଡିତମାନଙ୍କ କଥାରେ ଦୃଢ଼ ଏକମତ ଅଛନ୍ତି । ଏଣୁ ସେ ସେହିକ୍ଷଣି ମୌନ ହୋଇଗଲେ । ପଣ୍ଡିତମାନେ କାଳିଦାସଙ୍କୁ ପରୀକ୍ଷା କରିବା ନିମନ୍ତେ ଯେତେ ଯାହା ପ୍ରଶ୍ନ କଲେ ମୁଦ୍ଧା କାଳିଦାସ ଆଦୌ ମୁଖ ଫିଟାଇଲେ ନାହିଁ । ଏହା ଦେଖି ପଣ୍ଡିତମାନେ ଜାଣିଲେ କାଳିଦାସ ରତ୍ନାବତୀଙ୍କୁ ଲାଭ କରିବା ସୁନିଶ୍ଚିତ ।

## ପ୍ରତିଶୋଧର ବିଧାନ :—

ଯୁବକ ବ୍ରାହ୍ମଣ ସନ୍ତାନ, ଗୌରବର୍ଣ୍ଣ ଶରୀର, ବଳିଷ୍ଠ ଓ ସୁନ୍ଦର ଚେହେରା ସେଥିରେ ପୁଣି ଏହି ପଣ୍ଡିତ ବେଶ ତାଙ୍କୁ ଖୁବ ମାନୁଥିଲା । ପଣ୍ଡିତମାନେ ଯୁବକର ବେଶଭୂଷା ଓ ରୂପର ସୌନ୍ଦର୍ଯ୍ୟ ଦେଖି ଖୁବ୍ ପ୍ରସନ୍ନ ହେଲେ । ଯୁବକଙ୍କୁ ସାଥିରେ ଧରି ପଣ୍ଡିତମାନେ ରାଜା ମାଣିକେଶ୍ଵରଙ୍କ ନିକଟରେ ପହଞ୍ଚିଲେ । ଯୁବକଙ୍କ ପରିଚୟ ଦେଇ କହିଲେ । ଏହି ଯୁବକ ବର୍ତ୍ତମାନ ଭାରତର ସର୍ବଶ୍ରେଷ୍ଠ ପଣ୍ଡିତ ଅଟନ୍ତି । ସେ ଏକ ମହାନ୍ ଗ୍ରନ୍ଥ ରଚନା କରିବା ନିମନ୍ତେ ଦେବୀଙ୍କର ଉପାସନାରେ ବ୍ରତୀ ହୋଇଛନ୍ତି । ତେଣୁ କିଛି ଦିନ ନିମନ୍ତେ ସେ କଠୋର ମୌନବ୍ରତ ପାଳନ କରି ଅଛନ୍ତି । ସେ ଆପଣଙ୍କ କନ୍ୟାଙ୍କ ସମସ୍ତ ପ୍ରଶ୍ନ ଅଙ୍ଗୁଳି ନିର୍ଦ୍ଦେଶ କରି ବୁଝାଇବାକୁ ସମର୍ଥ ଅଟନ୍ତି । ଏଣୁ ଏହି ପଣ୍ଡିତଙ୍କ ସହିତ ଆପଣଙ୍କ କନ୍ୟାଙ୍କର ଶାସ୍ତ୍ର ଚର୍ଚ୍ଚା ହେଉ ।

ରାଜା ରତ୍ନାବତୀଙ୍କୁ ପଣ୍ଡିତମାନଙ୍କ ଅଭିପ୍ରାୟ ଜଣାନ୍ତେ, ରତ୍ନାବତୀ ପଣ୍ଡିତମାନଙ୍କ ଅଭିସନ୍ଧି ବୁଝି ନପାରି ମୌନବ୍ରତ ପାଳନ କରୁଥିବା ପଣ୍ଡିତ ରୂପଧାରୀ ମୂର୍ଖ କାଳିଦାସଙ୍କ ସହିତ ଶାସ୍ତ୍ର ଚର୍ଚ୍ଚା କରିବା ନିମନ୍ତେ ପ୍ରସ୍ତୁତ ହେଲେ । ପାରଦ୍ୱାରୀ ଶାସ୍ତ୍ର ଚର୍ଚ୍ଚା ଦେଖିବା ନିମନ୍ତେ ରାଜଭବନର ସମସ୍ତ ବ୍ୟକ୍ତି ତଥା ରାଜାଙ୍କ ପ୍ରିୟଜନ ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ବହୁ ସଂଖ୍ୟାରେ ସେହି ସଭାରେ ଉପସ୍ଥିତ ହୋଇଥିଲେ । ପଣ୍ଡିତମାନଙ୍କ ଆଦେଶ ପାଳନ କରି କାଳିଦାସ ଅତ୍ୟନ୍ତ ଗମ୍ଭୀର ଦେଖାଯାଉଥିଲେ ଓ ଦୃଢ଼ ମୌନ ରକ୍ଷା କରିଥିଲେ ।

ବହୁ ଜନସମାଗମ ରାଜସଭା ମଧ୍ୟରେ ଏକ ଦିବ୍ୟ ଆସନରେ କାଳିଦାସଙ୍କୁ ପଣ୍ଡିତମାନେ ଉପବେଶନ କରାଇ ତାଙ୍କର

ସନ୍ନିକଟରେ ବେଶି ରହିଲେ । ଠିକ୍ ସମୟରେ ରତ୍ନାବତୀ ସମସ୍ତ ପଣ୍ଡିତ ସଭାକୁ ଆସି, ଯେଉଁଠି ତାଙ୍କ ନିମନ୍ତେ ଏକ ଦିବ୍ୟ ଆସନ ପ୍ରସ୍ତୁତ ହୋଇ ରଖାଯାଇଥିଲା, ସେଥିରେ ସେ ଉପବେଶନ କଲେ । ସେ ଦିନର ସଭା ଅତ୍ୟନ୍ତ ଗମ୍ଭୀର ଓ ନୀରବ ନିଶ୍ଚଳ ଥିଲା । କାହାର ମୁଖରୁ ଶବ୍ଦଟିଏ ନିର୍ଗତ ହେଉ ନଥିଲା ।

## ଈଶ୍ୱରଙ୍କ ବିଚିତ୍ର ଇଚ୍ଛା :—

ରତ୍ନାବତୀ ବହୁ ଆଭରଣ ଯୁକ୍ତ ହୋଇ ରାଜସଭାରେ ପ୍ରବେଶ କରିବା ଦେଖି କାଳିଦାସ ପ୍ରସନ୍ନ ବଦନରେ ସନ୍ତୁଷ୍ଟ ନୟନରେ ରତ୍ନାବତୀଙ୍କ ଆପାଦ ମସ୍ତକ ଓ ତାଙ୍କର ଦିବ୍ୟରତ୍ନ ବିଭୂଷିତ ଦିବ୍ୟ ରୂପଶ୍ରୀକୁ ବାରଂବାର ଦେଖିବାକୁ ଲାଗିଲେ । ରତ୍ନାବତୀ ଯୁବକ ପଣ୍ଡିତଙ୍କ ରୂପଶ୍ରୀ ଦର୍ଶନ କରି ସ୍ଥିର କଲେ ଯେ ଯୁବକ ନିଶ୍ଚୟ ଜଣେ ମହାପଣ୍ଡିତ ହୋଇଥିବେ । ସେ କାଳ ବିଳମ୍ବ ନକରି ନିଜର ଗୋଟିଏ ଅଙ୍ଗୁଳି କାଳିଦାସଙ୍କୁ ଦେଖାଇଲେ । ସେ ଏପରି କରିବାର ତାତ୍ପର୍ଯ୍ୟ ଏହି ଯେ, ଏ ସମଗ୍ର ସୃଷ୍ଟିର ପାଳନକର୍ତ୍ତା, ରକ୍ଷକକର୍ତ୍ତା, ସୃଷ୍ଟିକର୍ତ୍ତା, ବିନାଶକର୍ତ୍ତା ସବୁକିଛି ସେହି ଏକମାତ୍ର ପରମେଶ୍ୱର ଅଟନ୍ତି କି ?

ମୂର୍ଖ କାଳିଦାସ ରତ୍ନାବତୀଙ୍କ ପ୍ରଶ୍ନର ମର୍ମ ବୁଝି ନପାରି ସେ ରତ୍ନାବତୀଙ୍କ ଗୋଟିଏ ଅଙ୍ଗୁଳି ଦେଖି ବିଚାର କଲେ ଯେ ସେ କ୍ଷତ ରତ୍ନାବତୀଙ୍କ କଥାରେ ନଚଳିବେ । ତେବେ ରତ୍ନାବତୀ ଗୋଟିଏଅଙ୍ଗୁଳିରେ ତାଙ୍କ ଚକ୍ଷୁ ନଷ୍ଟ କରିପକାଇବେ । ତେବେ ସେ କିଣ ପୁରୁଷ ହୋଇ ଏବେ ଥିବୁ ? ଯେ ଚକ୍ଷୁ ନଷ୍ଟ କରି ପକାଇବା ଯୁବତୀଙ୍କୁ ଅକ୍ଷତ ଅବସ୍ଥାରେ ଛାଡିଦେବେ ନା ସେ ମଧ୍ୟ ତାଙ୍କର ଦୁଇଟି ଚକ୍ଷୁ ନଷ୍ଟ କରିବାରେ ପୂର୍ଣ୍ଣ ସମର୍ଥ ଅଟନ୍ତି । ଏପରି ସ୍ଥିର କରି । କାଳିଦାସ ନିଜର ଦୁଇଟି ଅଙ୍ଗୁଳି ରତ୍ନାବତୀଙ୍କୁ ପ୍ରଦର୍ଶିତ କଲେ ।

କାଳିଦାସ ଦୁଇଟି ଅଙ୍ଗୁଳି ଦେଖାଇବା ମାତ୍ରେ ରତ୍ନାବତୀଙ୍କ ମନରେ ଅନେକ ଚିନ୍ତା ଜାଗ୍ରତ ହେଲା । ସେ ଜାଣିଲେ କାଳିଦାସ ଯେଉଁ ଦୁଇଟି ଅଙ୍ଗୁଳି ଦେଖାଇଛନ୍ତି ତାହାର ଅର୍ଥ ଠିକ୍ ଅଛି । କାରଣ ଈଶ୍ୱର ଏକ ହେଲେ ସୁଦ୍ଧା ସେ ପ୍ରକୃତିକୁ ଅବଲମ୍ବନ ନକଲେ ସୃଷ୍ଟି କରି ପାରିବେ ନାହିଁ, ପାଳନ କରିପାରିବେ ନାହିଁ କିମ୍ବା ବିନାଶ କରିପାରିବେ ନାହିଁ । ତେଣୁ ସେହି ପୁରୁଷ ହିଁ ଶକ୍ତି ଅଟନ୍ତି । ଶକ୍ତି ଓ ଶକ୍ତିମାନ ଅଭେଦ । ସେ ଓଁ ଓ ହ୍ରୀଂ ଅଟନ୍ତି । ସେ ବ୍ରହ୍ମ ଓ ମାୟା ଅଟନ୍ତି । ସେ ସତ୍ ଓ ଅସତ୍ ଅଟନ୍ତି । ଏପରି ଅନେକ କିଛି ବିଚାର କରି ରତ୍ନାବତୀ ଅଉ ଏକ ପ୍ରଶ୍ନ କଲେ ଯେ ଏହି ପ୍ରକୃତି ଓ ପୁରୁଷକୁ ନେଇ ଯଦି ଜଗତର ସବୁ କିଛି ସୃଷ୍ଟି ସ୍ଥିତି ଓ ପ୍ରଳୟ ହେଉଛି । ତେବେ ସେ ସତ୍ତ୍ୱ ରଜ ଓ ତମ ଗୁଣକୁ ଆଶ୍ରୟ କରି କରନ୍ତି ବା ନିଜେ ସ୍ୱୟଂ କରନ୍ତି । ଏହା ବିଚାର କରି ସେ ତିନି ଗୋଟି ଅଙ୍ଗୁଳି କାଳିଦାସଙ୍କୁ ଦେଖାଇଲେ ।

କାଳିଦାସ ବିଚାର କଲେ ମୁଁ ତାର ଦୁଇଟି ଚକ୍ଷୁ ନଷ୍ଟକରି ଦେଇପାରିବି ବୋଲି ଜଣାଇବା ସତ୍ତ୍ୱେ ସେ ଭୟଭୀତ ନ ହୋଇ ମୋର ଦୁଇଟି ଚକ୍ଷୁ ଓ ନାଶା ନଷ୍ଟ କରିଦେବା କଥା ଜଣାଉଛି । ତେବେ ଏ ନାରୀ ସାଧାରଣ ନାରୀ ନୁହେଁ । ମୁଁ ଏହାକୁ ନିଶ୍ଚୟ ଅଧିକ କିଛି ଦଣ୍ଡ ଦେଇ ଶାସନ କରିବି । ଏହାର ଦୁଇ ଚକ୍ଷୁ ନଷ୍ଟ କରିବା ସଙ୍ଗେ ସଙ୍ଗେ ଦୁଇ କର୍ଣ୍ଣ ମଧ୍ୟ ଛେଦନ କରିବି । ଏହା ଜଣାଇ ଦେବାକୁ ସେ ଚାରିଗୋଟି ଅଙ୍ଗୁଳି ଦେଖାଇଲେ ।

ରତ୍ନାବତୀ କାଳିଦାସଙ୍କ ଚାରିଗୋଟି ଅଙ୍ଗୁଳି ଦେଖି ସ୍ଥିର କଲେ । ଯେ ପରମାତ୍ମାଙ୍କ ବିଷୟରେ ଅନେକ କଥା ଚାରି ବେଦରେ ବର୍ଣ୍ଣିତ ହୋଇଛି । ବେଦ ଦ୍ୱାରା ତାଙ୍କୁ ଜାଣିବାକୁ ହୁଏ । ଏଣୁ ବେଦବିତ୍ ନ ହେଲେ ସେହି ସତ୍ତ୍ୱ ରଜ ଓ ତମର ତତ୍ତ୍ୱ

ବୁଝିବା ଅତି କଷ୍ଟକର । ତଥାପି ପଞ୍ଚମହାଭୂତରେ ତୋ ଏହି ଜଗତ ଓ ଜଗତର ପ୍ରାଣୀ ସକଳଙ୍କୁ ଦେଖିଲେ ସେହି ବେଦର ସକଳ ତତ୍ତ୍ୱ ଜାଣି ପାରିବା . ଏଣୁ ପଞ୍ଚମହାଭୂତ ହିଁ ଈଶ୍ୱରଙ୍କ ପରମତତ୍ତ୍ୱ ଅଟେ । ପଞ୍ଚମହାଭୂତରେ ପରମେଶ୍ୱର ତତଃ ପ୍ରୋତ ହୋଇ ବିଦ୍ୟମାନ ହୋଇ ଅଛନ୍ତି । ଏଣୁ ଜଗତର ପଞ୍ଚମହାଭୂତ ସ୍ୱୟଂ ଈଶ୍ୱର ସଦୃଶ୍ୟ ଅଟନ୍ତି । ଏହା ବିଚାର କରି ରତ୍ନାବତୀ ନିଜର ଗୋଟିଏ ହାତ କାଳିଦାସଙ୍କୁ ଦେଖାଇଲେ ।

ରତ୍ନାବତୀ ତାଙ୍କୁ ହାତ ଦେଖାଇବା ଦେଖି କାଳିଦାସ ସାମାନ୍ୟ କ୍ରୋଧିତ ହୋଇଗଲେ । ପଣ୍ଡିତ ମାନେ କାଳିଦାସଙ୍କ ମୁଖ ଦେଖି ଭୟଭୀତ ହୋଇ ପଡ଼ିଲେ । ମୂର୍ଖ କାଳେ କିଛି କହି ଦେବ ବୋଲି ସେମାନଙ୍କ ମନରେ ଭୟ ଜାତ ହେଲା । କିନ୍ତୁ ସୁଭାଗ୍ୟ କ୍ରମେ କାଳିଦାସ କିଛି ନ କହି ନିଜର ହାତକୁ ମୁଠାକରି ରତ୍ନାବତୀଙ୍କୁ ଜଣାଇ ଦେଲେ ଯେ ସେ ଯଦି ନାରୀ ହୋଇ ତାଙ୍କୁ ଏକ ଗୃହପୂଜା ମାରିବେ ସେ ପୁରୁଷ ହୋଇ କଣ ଏଭଳି ଦୁଷ୍ଟା ରମଣୀଙ୍କୁ ଛାଡ଼ିଦେବେ ନା ସେମଧ ଏକ ବିଧା ମାରି ତାଙ୍କୁ ଭୂଶାୟିତ କରି ଦେବେ । କାଳିଦାସ ରତ୍ନାବତୀଙ୍କୁ ମୁଷ୍ଟିକ ଦେଖାଇବା ଫଳରେ ରତ୍ନାବତୀ ସ୍ଥିର କଲେ ଯେ ପଣ୍ଡିତ ତାହାଙ୍କୁ ' ମୁଷ୍ଟିଯୋଗ ' ଉପରେ ଆଲୋଚନା କରିବା ନିମନ୍ତେ ଦେଇ ଅଛନ୍ତି । ନିର୍ଦ୍ଦେଶ ରତ୍ନାବତୀ ଶାସ୍ତ୍ର ଜ୍ଞାନରେ ସିନା ଅତ୍ୟନ୍ତ ପଣ୍ଡିତ । ଅଟନ୍ତି କିନ୍ତୁ ଯୋଗ ତତ୍ତ୍ୱ ଉପରେ ତାଙ୍କର ଅଧିକ ଜ୍ଞାନ ନଥିଲା ତେଣୁ ସେ ଜାଣିଲେ ଏହି ଯୁବକ ପଣ୍ଡିତ ଜଣକ ଯୋଗଶାସ୍ତ୍ରପରି ନାନା ଜଟିଳ ଶାସ୍ତ୍ରରେ ନିଶ୍ଚୟ ପାରଦର୍ଶିତା ଲାଭ କରି ଅଛନ୍ତି । ସେ ଏପରି ନାନା ଶାସ୍ତ୍ରବିଶାରଦଙ୍କୁ ପତି ରୂପେ ବରଣ କରିବାକୁ ଚାହାନ୍ତି । ଏପରି ସ୍ଥିର କରି ରତ୍ନାବତୀ ନିଜେ ପରାସ୍ତ ହୋଇ ଅଛନ୍ତି ବୋଲି

ଘୋଷଣା କଲେ । ଏବଂ ସେ ବସିଥିବା ଆସନରୁ ତୁରନ୍ତ ଉଠି କାଳିଦାସଙ୍କ ଗଳାରେ ନିଜର ଏକ ରତ୍ନହାର ବିଲମ୍ବିତ କରି ଦେଇ ପିତାଙ୍କୁ ଅଭିମତ ଜଣାଇ ଧୀର ପଦ କ୍ଷେପରେ ସହାତ୍ୟାଗକରି ସଖି ମାନଙ୍କ ସହିତ ନଗର ମଧ୍ୟରେ ପ୍ରବେଶ କଲେ । ଜଣେ ମହାନ ପଣ୍ଡିତଙ୍କୁ ପତି ରୂପେ ଲାଭ କରିଚନ୍ତି ଜାଣି ରତ୍ନାବତୀଙ୍କ ମନ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ପଡ଼ୁଥାଏ ।

**ବିବାହ ଉତ୍ସବ—**

ବହୁ ଦିନ ଧରି ପଣ୍ଡିତମାନଙ୍କ ସମାଗମ ବିଦ୍ୟଚର୍ଚ୍ଚା । ପଣ୍ଡିତ ମାନଙ୍କ ଅପମାନ । ନୂତନ ପାତ୍ରର ଅନ୍ୱେଷଣ ଦେଖି ଦେଖି ଗୌଡ଼ ରାଜା ମାଣିକେଶ୍ୱର ବିବ୍ରତ ହୋଇ ପଡିଥିଲେ । ଝିଅର ମୁହଁରୁ ନିଜର ବିବାହ ପ୍ରସ୍ତାବ ଶୁଣି ସେ ବହୁତ ଆନନ୍ଦିତ ହେଲେ । ସେହି ରାତ୍ରି ବିବାହର ଆୟୋଜନ ଚାଲିଲା । ନଗରରେ ଉତ୍ସବର ଆୟୋଜନ ହେଲା । ରାଜାଙ୍କୁ ସନ୍ତୋଷ ନିମନ୍ତେ ପ୍ରଜାମାନେ ଏହି ଉତ୍ସବକୁ ଅତି ମାତ୍ରାରେ ବଢାଇ ଦେଲେ । ନାଚ ଗୀତ ଏହି ବିବାହ ଉତ୍ସବକୁ ଆହୁରି ଅଧିକ ସୁନ୍ଦର ସରସ କରି ଦେଲେ ।

ପଣ୍ଡିତ ମାନେ ଜାଣିଲେ ସେମାନଙ୍କର ମନ କାମନା ପୂର୍ଣ୍ଣ ହୋଇଛି । ସେମାନେ ପ୍ରାଣ ଭୟରେ ଆତ୍ମ ଗୋପନ କରି ଯେ ଯେଉଁ ଆଡ଼େ ପଳାଇଲେ । ଏହି ବିବାହର ପରିଣାମ ଅତି ଭୟଙ୍କର ହେବ ସେମାନେ କଳ୍ପନା କରିଥିଲେ । ସମସ୍ତଙ୍କ ମନରେ ଭୟର ସଂଚାର ହେଉଥିଲା । ଏଣୁ ଉତ୍ସବ ଦେଖିବା ପାଇଁ ସେମାନେ ରାଜ ଭବନରେ ରହି ପାରିଲେ ନାହିଁ । କାଳିଦାସଙ୍କ ମନ ଖୁବ ଆନନ୍ଦ । ସେ ରାଜ ଜେମାଙ୍କୁ ପରାସ୍ତ କରିପାରିଛନ୍ତି । ବିବାହ ମଣ୍ଡପକୁ ଯିବା ନିମନ୍ତେ ତାଙ୍କୁ ଅତି ମୂଲ୍ୟବାନ ପଟବସ୍ତ୍ର ପିନ୍ଧାଇ ଦିଆଗଲା । ଯୁବକ କାଳିଦାସ ଅତି

ସୁନ୍ଦର ଦେଖାଗଲେ । ରତ୍ନାବତୀ ତାଙ୍କୁ ଚାହିଁ ଚାହିଁ ମୁଗ୍ଧ ହୋଇ ଯାଉଥିଲେ । କିଛି କାଳ ପରେ ବିବାହ ଆଡ଼ମ୍ବର ଶେଷ ହେଲା । ବିଧି ଅନୁଯାୟୀ ରତ୍ନାବତୀଙ୍କ ସଖି ମାନେ କାଳିଦାସଙ୍କ ଶୟନ କକ୍ଷରେ ଛାଡି ଆସିଲେ । କାଳିଦାସତ ମୌନ ବ୍ରତ ପାଳନ କରୁଛନ୍ତି । ରତ୍ନାବତୀ କ'ଣ ବା କଥା ହେବେ । ସେ ନୀରବରେ ପଲଙ୍କ ଉପରେ ବସିଲେ ଠିକ୍ ସେତିକ ବେଳେ ରାଜ ଭବନର ପଶୁଶାଳାରେ ଗୋଟିଏ ଓଟ ବାରଂ ବାରଂ ଚିତ୍କାର କଲା କାଳିଦାସ ପରେ ଚିତ୍କାର ଶୁଣି' ପିଲାଙ୍କ ପରି ଆନନ୍ଦ ହୋଇ ରତ୍ନାବତୀଙ୍କ କହିବାକୁ ଚାହିଁଲେ 'ଉଷ୍ଟ୍ର' 'ଉଷ୍ଟ୍ର' । ରତ୍ନାବତୀ ଚମକି ପଡିଲେ । ଜଣେ ପଣ୍ଡିତଙ୍କ ମୁଖରୁ ଏ ଭଳି ଅପଭ୍ରଂଶ ଶବ୍ଦ ସେ କେବେ ଆଶା କରି ନଥିଲେ । ଏଣୁ ପଚାରିଲେ କଣ କହିଲେ । କାଳିଦାସ ଚମକି ପଡିଲେ । ସେ ତ ଶୁଣିଥିଲେଣି ରତ୍ନାବତୀ ଜଣେ ପଣ୍ଡିତା ସେ ଫେରେ କ'ଣ କହିବେ ଭାବି ପାରିଲେ ନାହିଁ । ଟିକିଏ ଯତ୍ନ କରି କହିଲେ 'ଉଟ୍ର' 'ଉଟ୍ର'

## ଅନୁତାପ—

ରତ୍ନାବତୀ ଚାହିଁଲେ ସ୍ୱାମୀଙ୍କର ମୁଖ . ପଣ୍ଡୁର ପଡ଼ିଯାଉଛି । ସେ ଥରୁଛନ୍ତି । ତାଙ୍କର ମୁହଁର ଜ୍ୟୋତି ମଳିନ ପଡ଼ିଯାଉଛି । ସେ ବୁଝିପାରିଲେ ପଣ୍ଡିତ ମାନେ ତାଙ୍କର ଜୀବନକୁ ନଷ୍ଟ କରି ଚାଲିଯାଇଛନ୍ତି । ଜଣେ ମୁର୍ଖ ସହିତ ତାଙ୍କର ବିବାହ ହୋଇଯାଇଛି । ଆଉ ଉପାୟ ନାହିଁ । ଏହି ମୂର୍ଖକୁ ସେବା କରି ତାଙ୍କର ଜୀବନ କାଟିବାକୁ ହେବ । କେତେ ଦିଗବିଜୟୀ ପଣ୍ଡିତଙ୍କୁ ସେ ପରାଜିତ କରି ଅପମାନ ଦେଇଛନ୍ତି । ପଣ୍ଡିତ ମାନେ କିପରି ଦୟନୀୟ ଭାବରେ ତାଙ୍କ ପାଖରୁ ବିଦାୟ ନେଇଛନ୍ତି । ଏ ଦୃଶ୍ୟ ଗୁଡ଼ିକ ତାଙ୍କ ଆଖି ଆଗରେ ଭାସି ଉଠିଲା । ତାଙ୍କ ଆଖିରୁ ଲୁହ ଗଡି ପଡିଲା । ସେତେବେଳେ ରାଜ

ଭବନରେ ସଂସ୍କୃତ ଭାଷା ହିଁ ପ୍ରଚଳିତ ଥିଲା । ରାଜା ସଂସ୍କୃତରେ ହିଁ ଚର୍ଚ୍ଚା କରୁଥିଲେ । ରତ୍ନାବତୀଙ୍କ ମୁଖରୁ ଅନର୍ଗଳ ସଂସ୍କୃତ ନିର୍ଗତ ହେଉଥିଲା । ସେ କାନ୍ଦି କାନ୍ଦି ବିଧାତାଙ୍କୁ କହିଲେ —

ଉଷ୍ଟ୍ରେ ଲୁମ୍ପତି ରମ୍ବା ଷମ୍ବା
ତସ୍ମୈ ଦତ୍ତା ବିପୁଳ ନିତମ୍ବା ।
କିଂ ନ କରୋତି ବିଧିର୍ଯଦି ରୁଷ୍ଟଃ
କିଂ ନ କରୋତି ସଦେବ ହି ତୁଷ୍ଟଃ ॥

ସେ କହିଲେ ଯେ ବିଧାତା ଯଦି ରୁଷ୍ଟ ହେବେ କଣ କ୍ଷତି ନକରି ପାରିବେ ? ସେ ଯଦି ସନ୍ତୋଷ ହେବେ କଣ ହିତ ସାଧନ ନ କରିବେ ? ଦେଖ ବିଧାତା ମୋର ଉପରେ ରୁଷ୍ଟ ହୋଇ ଏ ଯେଉଁ ଯୁବକ ସହିତ ମୋତ ବିବାହ ଦେଲେ ଏତ ପ୍ରଥମ ପଦରେ ଉଷ୍ଟ୍ର ଶବ୍ଦର ମାତ୍ରା ଲୋପ କଲେ ଦ୍ୱିତୀୟରେ ଷ ଶବ୍ଦକୁ ଲୋପ କଲେଣି ଏ ମୂର୍ଖ ନୁହନ୍ତିତ ଆଉ କଣ ?

ଦୁଃଖ, ଚିନ୍ତା ଶୋକ କରି ରତ୍ନାବତୀ ପାଗଳ ପ୍ରାୟ ହୋଇଗଲେ । ପତିଙ୍କର ମୁହଁକୁ ଗୁହିଁ ପାରିଲେ ନାହିଁ ବାରଂବାର ଭୂମିକୁ ପଦାଘାତ କଲେ । ନିଜର ବିଦ୍ୟା ବୁଦ୍ଧିକୁ ଧିକ୍କାର କଲେ । ପିତାଙ୍କର ଇଚ୍ଛା ସେ ବିବାହ ନ କରି ନିଜର ପୌତୀ କାହିଁକି ଦେଖାଇଲେ ବୋଲି ଗଖିର ଅନୁତାପ କଲେ । ତାଙ୍କର ଆଖିରୁ ଝର ଝର ଲୁହ ଖସି ପଡୁଛି । ସେ ଯେଉଁ ଅପାର୍ଜିତ ଭୁଲ କରିଗଲେ ତାହା ଜୀବନ ତମାମ ଭୋଗିବାକୁ ହେବ । ସ୍ୱାମୀ ପ୍ରକୃତରେ ମୌନ ବ୍ରତ ପାଳି ନାହାନ୍ତି । ଏହା ପଣ୍ଡିତ ମାନଙ୍କର ଚକ୍ରାନ୍ତ ମାତ୍ର । ସ୍ୱାମୀଙ୍କର ବା ଦୋଷ କଣ ? ଜଣେ ରୂପବତୀ ଗୁଣବତୀ ପଣ୍ଡିତା ଧନାଢ୍ୟ ରାଜ

ଟେମଙ୍କୁ ବିବାହ କରିବା ପାଇଁ କାହାର ଇଚ୍ଛା ନ ଥିଲା । ସେ କାଳିଦାସଙ୍କୁ ନିନ୍ଦା କରନ୍ତି । ସେ ନିଜର ଭାଗ୍ୟକୁ ଧିକ୍କାର କରି ଭୂମିକୁ ବାରମ୍ବାର ପଦାଘାତ କରୁଥାନ୍ତି ।

ପଲଙ୍କ ଉପରେ ମୌନ ହୋଇ କାଳୀଦାସ ବସି ରତ୍ନାବତୀଙ୍କୁ ଭୟରେ ଥରି ଥରି ଦେଖୁଥାନ୍ତି । ସେ କଣ ଭୁଲ୍ କଲେ ବୁଝିପାରୁ ନାହାନ୍ତି । ପଣ୍ଡିତମାନେ ତାଙ୍କୁ ଧୋକା ଦେଇ କୁଆଡ଼େ ଚାଲି ଗଲେଣି । ରାଜା ସକାଳୁ ଶୁଣିଲେ ଆଉ ତାଙ୍କର ରକ୍ଷା ନାହିଁ । ଫାସୀ ଦେଇ ପାରନ୍ତି । ତାଙ୍କର ମନ ଭୟରେ ପୂରିଗଲା । ସେ ଗତ ଦିନର କଥା ଗୁଡ଼ିକୁ ସ୍ମରଣ କରି କାନ୍ଦିବାକୁ ଲାଗିଲେ । ଗତ ଦିନର ସବୁ କଥା ତାଙ୍କର ସ୍ମରଣ ହେଲା ।

## ବାଲ୍ୟ ଜୀବନ—

ଉଜ୍ଜୟିନୀର ନିକଟବର୍ତ୍ତୀ ପୌଣ୍ଡ୍ର ଗ୍ରାମରେ ଏକ 'ଛୋଟ ଘର' ବ୍ରାହ୍ମଣ ଶାସନର ଶେଷ ପ୍ରାନ୍ତରେ ସେହି ଘରଟି ଅବସ୍ଥିତ । ନିରଞ୍ଜନ ତର୍କରତ୍ନଙ୍କର ସେ ଥିଲା ଛୋଟ ପରିବାର । ଦୁଇ ପୁତ୍ର ସ୍ତ୍ରୀ ଓ ସେ ନିଜେ ସେହି ଘରଟିରେ ବାସ କରନ୍ତି । ସେ ଥିଲେ ଜଣେ ଧୁରୀଣ ସଂସ୍କୃତ ପଣ୍ଡିତ । ବହୁ ରାଜାଙ୍କ ଠାରୁ ସମ୍ମାନ ଲାଭ କରି ଧନ ରତ୍ନ ଧରି ଘରକୁ ଫେରୁଥିଲେ । ରାଜା ମାନଙ୍କର ସ୍ନେହ ସମ୍ମାନରେ ପରିବାରର ଭରଣ ପୋଷଣ ଅତି ସୁଖରେ ହୁଏ । ସେହି ପରିବାରର ବଡ଼ ପୁଅ ଏହି କାଳିଦାସ । ଯାହାକୁ ପାଇବା ପାଇଁ ପିତା ନିରଞ୍ଜନ ତର୍କରତ୍ନ କାଳୀଙ୍କ ପାଖରେ ନିଷ୍ଠାର ସହିତ ପୂଜା ଉପାସନାଦି କରି ପୁତ୍ର ରୂପେ ଲାଭ କରିଥିଲେ ।

ଏହି କାଳୀଦାସଙ୍କୁ ପିତା ନିଜର ଅନୁରୂପ ପଣ୍ଡିତ କରିବା ପାଇଁ ପ୍ରବଳ ଚେଷ୍ଟା କରି ବ୍ୟର୍ଥ ହୋଇଛନ୍ତି । ଶେଷକୁ ଗ୍ରାମ

ପାଠଶାଳାରେ ଜଣେ ଦୁର୍ଦ୍ଦାନ୍ତ ଶିକ୍ଷକଙ୍କ ନିକଟରେ ଛାଡି ଦିଆଯାଇଥିଲା । କାଳିଦାସ ପିଲା ଦିନରୁ ପ୍ରକୃତିଗତ ଭାବରେ ଠକ, ଭଣ୍ଡ, ଦୁଷ୍ଟ, ଫାନ୍ଦିକ, ସବୁ କରିଥିଲେ । ସେ ସର୍ବଦା ନିଜ ବୟସ ଠାରୁ କମ୍ ବୟସର ପିଲାମାନଙ୍କ ସହିତ ମିଶି ଖେଳିବାକୁ ଭଲ ପାଉଥିଲେ । ସେ ଏତେ ଅବାଧ ଯେ, କାହାରି କଥା ମାନନ୍ତି ନାହିଁ ନଦୀରେ ପହଁରିବା, ଗଛ ଚଢ଼ିବା, ହିଂସ୍ର ଜନ୍ତୁଙ୍କୁ ଗୋଡ଼ାଇବା ପ୍ରଭୃତି ଭୟଙ୍କର କାମରେ ହାତ ଦେଉଥିଲେ । ନିତ୍ୟ କାଳିଦାସଙ୍କ ନାମରେ ନାନା ଆପତ୍ତି ଅଭିଯୋଗ ପିତାଙ୍କ ପାଖରେ ପହଞ୍ଚୁଥିଲା । ଏଣୁ ପିତା ସବୁବେଳେ କାଳିଦାସର ଚିନ୍ତାରେ ବୁଡ଼ି ରହୁଥିଲେ । କାଳିଦାସ ଆଉ ମଣିଷ ହେବ ନାହିଁ ବୋଲି ପିତା ଯେଉଁ ଦିନ ଜାଣିଲେ ସେ ସେହି ଚିନ୍ତାରେ ହିଁ ବୁଡ଼ିରହି ମୃତ୍ୟୁ ବରଣ କଲେ ।

ପିତାଙ୍କ ମୃତ୍ୟୁ ପରେ ଘରେ ବିଧବା ମା ଓ ସାନ ଭାଇ । କାଳିଦାସଙ୍କର ଭୟ ଦୂର ହେଲା । ପିଲା ସିନା ଦୁଷ୍ଟାମୀ ଦେଖି ମାରନ୍ତି ଏବେ ତାଙ୍କୁ ତଡ଼ିଆରିବା ଲୋକ ପୃଥିବୀରେ କେହି ଥିବାର ସେ ଦେଖିବାକୁ ପାଇଲେ ନାହିଁ । ସାହିର ପିଲାଏ କାଳିଦାସଙ୍କୁ ଦେଖିଲେ ଭୟରେ ଦୌଡ଼ନ୍ତି । ସେ ଦିନକୁ ଦିନ ବଡ଼ ଉଦଣ୍ଡ ହେଲେ । ଘରେ ରୋଜଗାର କରିବା ବ୍ୟକ୍ତି କେହି ନଥିଲେ ଏଣୁ ମା'ଙ୍କ ମୁଣ୍ଡରେ ବଜ୍ର ପଡ଼ିଲା । ସେ ବ୍ରାହ୍ମଣୀ ସ୍ତ୍ରୀ । ବାହାରକୁ କିପରି ଯିବେ ? ଧାନ କୁଟି ପାଣି ବୋହି ସେ ସାହିର କାହା ଘରୁ କିଛି ସାମାନ୍ୟ ଅର୍ଥ ଉପାର୍ଜନ କରି ପିଲା ଦୁଇଟିକୁ ପୋଷିବାର ବ୍ୟବସ୍ଥା କରନ୍ତି । ମା'ଙ୍କ ଉପାର୍ଜନ ଧନକୁ ଅର୍ଦ୍ଧେକ କାଳିଦାସ ବଳ ପୂର୍ବକ ଖାଇ ଆରାମରେ ବୁଲନ୍ତି, ମା'ଙ୍କୁ ଏସବୁ ବଡ଼ ଅସହ୍ୟ ବୋଧ ହେଉଥାଏ ।

ଦିନେ ଘରେ ଜାଳେଣି କାଠ ନଥିଲା ମା କହିଲେ କାଳରେ କାଠ ନ ଆଣିଲେ ଆଜ ଖାଇବା ବନ୍ଦ । ଏ କାମକୁ କାଳଦାସ ଖୁବ୍ ପାରେ । ସାହାର ଗଛୁ ହେଉ ସେ ହାଣ୍ଡି କାଠ ଆଣିବ କାହାକୁ ତାର ଭୟ ନାହିଁ । ସେ ଗୃହଲ କନ୍ଦରେ କୁରାଢ଼ୀ ପକାଇଲା ।

ଆଜ ତାର ସୁଦିନକ ଦୁର୍ଜନ । ପଣ୍ଡିତଙ୍କ ପରାମର୍ଶରେ ଆସିକା ରାଜାଭବନକୁ ପଠସ୍ତ କଲା । ପଣ୍ଡିତା ରାଜକୁମାରୀ ରତ୍ନାବତୀଙ୍କୁ ବିବାହ କଲା ଜଣେ ଅପୂର୍ବ ସୁନ୍ଦରକୁ । ସେତ କିଛି ଭୁଲ କରି ନାହିଁ ଖାଲି ଗୋଟିଏ ଭୁଲ କରିଛି ସେ ପିତା ମାତାଙ୍କର କଥା ଶୁଣିଲା ନାହିଁ ପଢିଲା ନାହିଁ ପିତାଙ୍କ ଭଳି ଜଣେ ପଣ୍ଡିତ ହୋଇ ପାରିଲା ନାହିଁ । ଆଜ ଯଦି ସେ ଜଣେ ପଣ୍ଡିତ ହୋଇଥାନ୍ତା ରତ୍ନାବତୀ କଣ ଏଭଳି ଅପମାନ ଦେଇ ପାରିଥାନ୍ତା । ଏସବୁ କାହିଁକି ହେଲାନାହିଁ ? ସେ କାହିଁକି ପଢ଼ିଲେ ନାହିଁ ? ଏ ସବୁ କଣ ତାଙ୍କର ଭାଗ୍ୟରେ ନାହିଁ ? ତାଙ୍କ ସାଥିରେ ପଢ଼ୁ-ଥିବା ପିଲାମାନେ ତ ପଣ୍ଡିତ ହେଲେ, ତେବେ ସେ ହେଲେ ନାହିଁ କାହିଁକି ? ପାଠ ପଢ଼ିଲା ବେଳେ ଶ୍ରୀପଞ୍ଚମୀ ଦିନତ ସେ ସରସ୍ୱତୀଙ୍କୁ ପୂଜା କରନ୍ତି ସେ ଦେବୀ ତାଙ୍କୁ ବିଦ୍ୟାଦେଲେ ନାହିଁ କାହିଁକି ? ସେ ଭାବି ଭାବି ସ୍ଥିର କଲେ ଯେ, ସେ ମୂର୍ଖ ହେବାଟା ତାଙ୍କର ଦୋଷ ନାହିଁ । ସେଇଟା ସରସ୍ୱତୀଙ୍କର ଦୋଷ । ସେ ଦୃଢ଼ ଭାବରେ ସ୍ଥିର କଲେ ମୁଁ ଯିବି ସରସ୍ୱତୀଙ୍କୁ ପଚାରିବି ମୁଁ କି ଅପରାଧ କଲି ଯେ, ସେ ମୋତେ ମୂର୍ଖ କଲେ ମୋ ସ୍ତ୍ରୀ ଭୂମିକୁ ପାଦ ମାରିନାହିଁ ସେ ମୋତେ ପଦାଘାତ କରିଛି । ମୁଁ ପୁରୁଷ ହୋଇ ସହିବି ନା ନା ମୁଁ ଏହାର ପ୍ରତିକାର କରିବି । ଯିବି ସରସ୍ୱତୀଙ୍କ ଘରକୁ ଯିବି ତାଙ୍କର କବାଟ ଭାଙ୍ଗି ଭିତରେ ପଶିବି ପଚାରିବି ମୋତେ କାହିଁକି ମୂର୍ଖ କଲୁ, ତୁ ମୋତେ ପଣ୍ଡିତ

କରେ ନ ହେଲେ ତୋର ଆଗରେ ପ୍ରାଣ ବିସର୍ଜନ କରି ଦେବ ।
କାଳିଦାସ ଚାଲିଗଲେ ।

ରତ୍ନାବତୀ କାନ୍ଦି କାନ୍ଦି ପଲଙ୍କ ତଳେ ପଡ଼ିଥିଲେ ଉଠି ଦେଖିଲେ ସ୍ୱାମୀ କେତେବେଳେ ଦ୍ୱାର ଖୋଲି ବାହାରକୁ ଚାଲି ଯାଇଛନ୍ତି । ଦ୍ୱାର ଖୋଲା ଅଛି । ସେ ତାଙ୍କୁ ଅନୁ ସନ୍ଧାନ କଲେ । ଦାସୀମାନେ ରାଜା ରାଣୀଙ୍କୁ ଖବର ଦେଲେ । ନଗର ପଡ଼ିଲା ଉଠିଲା ଚାରିଆଡ଼େ ଲୋକ ପଠାଗଲା କାଳିଦାସଙ୍କୁ ଖୋଜିବା ପାଇଁ । କେତେ ଦିନ ଖୋଜା ଚାଲିଲା ଖବର ମିଳିଲା ନାହିଁ । ରତ୍ନାବତୀ ଦୁଃଖ ଓ ଅନୁତାପରେ ଜଳି ଯାଉଥିଲେ । ସ୍ୱାମୀଙ୍କୁ ନପାଇ ତାଙ୍କର ଅନୁତାପ ଅନ୍ୟ ଭାବରେ ଗତିକଲି ଦୁଃଖ ଆହୁରି ବଢ଼ିଗଲା ସେ ଘୋଷଣା କଲେ ପଣ୍ଡିତମାନେ କଳ୍ପନା କରି ତାଙ୍କୁ ଜଣେ ମହାମୂର୍ଖ ସହିତ କୌଶଳ କ୍ରମେ ବିବାହ କରାଇ ପ୍ରତିଶୋଧ ନେଇଛନ୍ତି । ତେଣୁ ସେ ନିଜର ପାଣ୍ଡିତ୍ୟ ଆଉ କାହାର ଆଗରେ ଦେଖାଇବେ ନାହିଁ । ଏଣୁ ସେ ମୌନ ବ୍ରତ ଅବଲମ୍ବନ କରି ଏକ କୋଠରୀ ଭିତରେ ରହିବେ । ଘୋଷଣା ପରେ ପରେ ରତ୍ନାବତୀ ମୌନ ହୋଇ ନାରୀ ପ୍ରହରୀ ବେଷ୍ଟିତ ଏକ ପ୍ରକୋ-ଷ୍ଠରେ ଏକାକୀ ଅବସ୍ଥାନ କଲେ ।

## ଅନୁସନ୍ଧାନ—

ଏଣେ କାଳିଦାସ ଚାଲିଥାନ୍ତି ଗାଁରୁ ଗାଁକୁ ଡେଇଁ । ସେ ଜଣେ କୃଷକଙ୍କୁ ଦେଖି ପଚାରିଲେ ତୁମେ ମୋତେ କହି ପାରିବ ସରସ୍ୱତୀ କେଉଁଠି ରହନ୍ତି କୃଷକ ଆଶ୍ଚର୍ଯ୍ୟ ହୋଇ ତାଙ୍କ ମୁହଁକୁ ଚାହିଁ ରହିଲେ କହିଲେ ତାଙ୍କର ଘର କଣ ହେ ମନ୍ଦିରରେ ରହନ୍ତି । ତାଙ୍କ ମନ

ବୋଧ ହେଲା ନାହିଁ । ସେ ପୁଣି ଗ୍ଲାଲେ ସେ ଜଣେ ବାଟୋଇଙ୍କୁ ପଚାରିଲେ । ଭାଇ ସରସ୍ୱତୀଙ୍କୁ ମୁଁ କେଉଁଠି ଭେଟିବି ଟିକଏ ବତାଇ ଦିଅ । ବାଟୋଇ ଜଣେ ପଣ୍ଡିତ ବ୍ରାହ୍ମଣ । ସେ କହିଲେ ସେତ ସବୁଠି ବ୍ୟାପି କରି ଅଛନ୍ତି । କାଳିଦାସ ବୁଝିପାରିଲେ ନାହିଁ । ଆଉ ଜଣେ ଟୋକାକୁ ପଚାରିଲେ ସେହି ପ୍ରଶ୍ନ ଟୋକାଟି ମଜା କରିବାକୁ କହିଲା ନାକ ସିଧା ଗଲେ ତାଙ୍କ ପାଖରେ ପହଞ୍ଚି ଯିବୁ ।

ସରସ୍ୱତୀଙ୍କର ଠିକଣା ପାଇ ଗଲେ କାଳିଦାସ ନାକଟା ସେତେ ବେଳେକୁ ଉତ୍ତର ଦିଗକୁ ଥିଲା ଏଣୁ ସେ ମୁଣ୍ଡ ନ ହଲାଇ ଠିକ୍ ଆଗକୁ ମାଡ଼ି ଗ୍ଲଲେ । ନାକ ସିଧା ସବୁ ବେଳେ ରାସ୍ତା ମିଳିବ କୁଆଡ଼ୁ ଅମଡ଼ା ଅମଡ଼ା ଗ୍ଲଲି ପାଦ ମକଚା ହୋଇ ଗଲାଣି । କଣ୍ଟା ପଡ଼ିଲେ ମଧ୍ୟ ମାଡ଼ି ଗ୍ଲଲନ୍ତି । ଚାପଡ଼ିଲେ କିଏ ମାରୁ କି ଗାଳି ଦେଉ କାହାର ଘରେ ପଶି କାହାର ଚାଳରେ ଚଢ଼ି ସିଧା ସିଧା ଗ୍ଲଲଥା'ନ୍ତି । ମୁଣ୍ଡ ବୁଲାଇଲେ ଦିଗ ବଦଳି ଯିବ । ଏଣୁ ମୁଣ୍ଡ ସିଧା ରଖି ଦେହ ଜଖମ ହୋଇଗଲାଣି । ସେ ଏକାକ ଏକ ମୁହାଁ ବଣ ବୁଦା ପାହାଡ଼ ଦେଇ ଶେଷରେ ଏକ ନଦୀ ଭିତରେ ପଶିଲେ । ନଦୀର ସ୍ରୋତ ଅତ୍ୟନ୍ତ ପ୍ରବଳ ଥିଲା କୂଳ ଖାଇ ମାଡ଼ି ମାଡ଼ି ଗ୍ଲଲିଛି । କାଳିଦାସ ସେ ଭିତରେ ପଶି ଖଣ୍ଡେ ଦୂରକୁ ଘସି ଗଲେ । ସେ ଜାଣିଲେ ନଦୀ ପାରି ହୋଇ ପାରିବେ ନାହିଁ । ତାଙ୍କର ଲକ୍ଷ୍ୟ ଭ୍ରଷ୍ଟ ହୋଇ ଯାଉଛି । ସେ ନଦୀ କୂଳରେ ଠିଆ ହୋଇ ଆଞ୍ଜୁଳା ଆଞ୍ଜୁଳା ହୋଇ ପାଣିରେ ପକାଉଛନ୍ତି । ତାଙ୍କର ବିଶ୍ୱାସ ନଦୀରେ ବାଡ଼ି କରି ସେ ସହଜ ବାଟେ ପାରି ହୋଇ ଯିବେ । ନଦୀର ଖର ଜଳ ବାଲିକୁ ଭସାଇ ନେଉଛି । ତଥାପି ବାଲି ପକା ଗ୍ଲଲିଛି । ଯେତେ ପକାଇଲେ ମୁଠା ପାଣି ସୁଅ ମୁଠେ ବାଲି ରଖୁ ନାହିଁ । ସେତେବେଳକୁ ସେ ଏକୋଇଶି

ଦିନ ହେଲା ଶୋକ ଶୋଷରେ ଛଟପଟ ହେଉଛନ୍ତି । ସରସ୍ୱତୀଙ୍କୁ ନ ଭେଟିଲା ଯାଏ ଖାଇବେ ନାହିଁ କି ଜଳ ସ୍ପର୍ଶ କରିବେ ନାହିଁ ବୋଲି ମନରେ ଦୃଢ଼ ଶପଥ କରିଛନ୍ତି । ଦିନ ରାତି ପ୍ରତି ମୁହୂର୍ତ୍ତ ସରସ୍ୱତୀଙ୍କୁ ଖୋଜୁଛନ୍ତି, ଡାକୁଛନ୍ତି, ଅଭିମାନ କରୁଛନ୍ତି । ସେ କାହିଁକି ମୂର୍ଖ କଲେ ଭାବ କାନ୍ଦ ପକାଉଛନ୍ତି । ସେ ଏକ ଚିନ୍ତା, ଏକ ଲକ୍ଷ୍ୟ, ଏକ ବିଶ୍ୱର ଉପରେ ଦୃଢ ରହି ନଦୀକୁ ନିଜ ଶିରରେ ବାନ୍ଧିବା ର ଲାଗିଛନ୍ତି । କିଛି ଦିନ ପରେ ଜଣେ ବୁଢ଼ୀ ଦେଖାଗଲେ ।

ଯୁବକଟିକୁ ଚାହିଁ ବୁଢ଼ୀ କହିଲେ ବାପ ଏ ନିର୍ଜନ ନଦୀ ସ୍ଥଳରେ ଏ କଣ କରୁଛୁ । ଯୁବକ କହିଲେ ମୁଁ ନଦୀରେ ବାଲି ବିଛ ବାନ୍ଧି ସରସ୍ୱତୀଙ୍କ ଘରକୁ ଯିବି । ସେ ପଚାରିଲେ ସରସ୍ୱତୀ କଣ ନଦୀ ଆର ପଟେ ଅଛନ୍ତି ? ସେ ତ ତୋ ପାଖରେ ମଧ୍ୟ ଅଛନ୍ତି । ଏତେ ଶ୍ରମ କାହିଁକି କରୁଛ । ଯୁବକ କହିଲେ ମୁଁ ତାଙ୍କୁ ବିଦ୍ୟା ମାଗିବି । ସେ ମୋତେ ମୂର୍ଖ ମୂର୍ଖ କଲେ କାହିଁକି ପଚାରିବି । ବୁଢ଼ୀ ପୁଣି କହିଲେ—ଭାଗ୍ୟରେ ନ ଥିଲେ ସେ ସରସ୍ୱତୀ କଣ ବିଦ୍ୟା ଦେଇ ପାରିବେ । ଯୁବକ ବିରକ୍ତ ହୋଇ କହିଲା ଯା ବୁଢ଼ୀ ମୋତେ ରାଗନା । ମୁଁ କାହାର କଥା ଶୁଣିବାକୁ ଚାହେଁନା ।

ସରସ୍ୱତୀଚ ତାର ନିଷ୍ଠା ବିଶ୍ୱାସ **ଦେଖି** ମାନବ ରୂପରେ ଏ ମାୟା ଦେହ ଧାରଣ କରି ଆସିଛନ୍ତି । ସେ ବା କାଳିଦାସର କଥାରେ ବିମୁଖ ହେବେ କାହିଁକି ? ସେ **ଫେରେ** ବୁଝାଇ କହିଲେ ଆରେ ବାପ ମୋ କଥା ଶୁଣ । ଏ ନଦୀ ପାରି ହୋଇ କୁଆଡ଼େ ଯିବୁ । ସେ ପଟେ କଣ ସରସ୍ୱତୀଙ୍କର ଘର ଅଛି ? ଏ ମିଛ କଥାରେ ବିଶ୍ୱାସ କରି ତୁ

ସବୁତ ନଷ୍ଟ ସୁଅରେ ଭାସି ଯାଉଛି । ଏ ବାଲ ହାଡ଼ ରହିବ ନାହିଁ ତୁ ନ ଖାଇ ନ ପିଇ ଶରୀରକୁ ଏତେ କଷ୍ଟ କାହିଁକି ଦେଉଛୁ ? ତୋ ମା ବାଇ ତୋତେ ଖୋଜୁଛନ୍ତି । ତୁ ତୋର ଘରକୁ ଫେରିଯା । ତୁ ସ୍ତ୍ରୀର ଜଣେ ସ୍ତ୍ରୀର ଅପମାନରେ ବଦଳା ପାଇବାକୁ ଏପରି ପାଗଳ ହେଉଛୁ କାହିଁକି । ତୁ ତୋ ସୁଖରେ ରହ । ଏ ସବୁ ବୃଥା ଚେଷ୍ଟାରୁ କ୍ଷାନ୍ତ ହୁଅ ।

## ମା'ଙ୍କ କରୁଣା—

ବୁଢ଼ୀର ଏ ପ୍ରବୋଧନ କଥା ଶୁଣି କାଳିଦାସ ଚମକି ପଡ଼ିଲେ । ପଚାରିଲେ ବୁଢ଼ୀ ତୁ ମୋ କଥା ସବୁ ଜାଣିଲୁ କେମନ୍ତ । ମୁଁ ସରସ୍ୱତୀଙ୍କୁ ନ ଭେଟିଲେ ଘରକୁ ଫେରିବି ନାହିଁ । ମୁଁ ମୋର ସ୍ତ୍ରୀ ଠାରୁ ଅପମାନ ପାଇଛି । ତେଣୁ ମୁଁ ଖାଇବି ନାହିଁ । ଭୋକେ ଭୋକେ ମରିଯିବା ପଛେ ଏ ଜୀବନର କି ପ୍ରୟୋଜନ, ସରସ୍ୱତୀଙ୍କୁ ନ ଭେଟିଲେ ମୁଁ ଫେରିବି ନାହିଁ । ବୁଢ଼ୀ କାଳିଦାସଙ୍କ ଭଳି ଜଣେ ଅବୋଧକୁ ଆଉ ବୁଝାଇ ପାରିଲେ ନାହିଁ । ତାଙ୍କର ଏହି ଦୃଢ଼ ନିଷ୍ଠା ଦେଖି ତାଙ୍କ ଉପରେ ଦେବୀଙ୍କର ଦୟା ଜାତ ହେଲା । ସେ ହସି ହସି କହିଲେ ବତ୍ସ କ୍ଷାନ୍ତ ହୁଅ । ମୁଁ ନିଜେ ସରସ୍ୱତୀ ତୋର ନିଷ୍ଠା ଦେଖି ତୋ ପାଖକୁ ଆସିଛି । କାଳିଦାସ କହିଲେ ହେ ଦେବୀ ତୁମର ମୁଁ ଶୁଣିଛି ଦେବୀ ସରସ୍ୱତୀଙ୍କ ହସ୍ତରେ ବୀଣା ଓ ପୁସ୍ତକ ଥାଏ ସେ ଚତୁର୍ଭୁଜ ଅଟନ୍ତି । କାହିଁ ତୁମେ ତ ସେ ପରି ନୁହଁ । ନା ନା ତୁମେ ମୋର କାର୍ଯ୍ୟରେ ବାଧା ଦେବା ପାଇଁ ଆସିଛ । ତୁମେ ଚାଲି ଯାଅ ମୁଁ ମୋର କାର୍ଯ୍ୟ କରେ ।" ଏହା କହି କାଳିଦାସ ପୁଣି ଥରେ ନଦୀରେ ବାଲି ପକାଇବାରେ ଲାଗି ପଡ଼ିଲେ ।

ସରସ୍ୱତୀ କାଳିଦାସଙ୍କର ନିଷ୍ଠା ଦେଖି ଆଉ ସମ୍ଭାଳି ପାରିଲେ ନାହିଁ । ସେ ତୁରନ୍ତ ନିଜର ଚତୁର୍ଭୁଜା ଦିବ୍ୟ ରୂପ ପ୍ରକଟ କରି ହସ୍ତରେ ବୀଣା ଓ ପୁସ୍ତକ ଧାରଣ କରି ଉଭା ହେଲେ । କାଳିଦାସ ଦେବୀଙ୍କର କମନୀୟ ମାତୃରୂପ ଦର୍ଶନ କରି କାନ୍ଦି କାନ୍ଦି ତାଙ୍କ ପାଦ କମଳରେ ଲୋଟିପଡିଲେ । ଦେବୀଙ୍କର ତେଜରେ ନଦୀ କୂଳ ଅତ୍ୟନ୍ତ ଉଜ୍ଜଳ ଦେଖାଯାଉଥିଲା । କାଳିଦାସ ସେହି ମନୋହର ରୂପ ଦର୍ଶନ କରି ବାରମ୍ବାର ଦେବୀଙ୍କ ଆପାଦ ମସ୍ତକକୁ ଅବଲୋକନ କରୁଥିଲେ । ଦେବୀ କାଳିଦାସଙ୍କୁ ନିଜର ଅଭୟ ଓ ବରଦା ହସ୍ତ ପ୍ରଦର୍ଶନ କରି ସାନ୍ତ୍ୱନା ଦେଲେ । ତଥାପି କାଳିଦାସ କ୍ରନ୍ଦନରୁ କ୍ଷାନ୍ତ ହେଲେ ନାହିଁ । ଦେବୀ ତାଙ୍କୁ ଯେତିକି ଆଶ୍ୱାସନ କଲେ । ସେ ସେତିକି ଅଧିକ କ୍ରନ୍ଦନ କରି କହିଲେ ମାଁ ମୁଁ ଅତ୍ୟନ୍ତ ଅଭାଗା, ମୋର ପିତା ଜଣେ ଅସାଧାରଣ ପଣ୍ଡିତ ହୋଇ ସୁଦ୍ଧା ମୁଁ ଜଣେ ମୂର୍ଖ ହୋଇ ଜନ୍ମ ହେଲି । ମୋର ସ୍ତ୍ରୀ ଏହି ପୃଥିବୀରେ ଜଣେ ପଣ୍ଡିତା ଅଥଚ ମୁଁ ତାର ସ୍ୱାମୀ ହୋଇ ମୂର୍ଖ ହେଲି । ତେବେ ମୂର୍ଖ ହୋଇ ଏହି ପୃଥିବୀରେ ମୋର ବଞ୍ଚିବାରେ କି ପ୍ରୟୋଜନ ? ତୁ ମୋତେ ବିଦ୍ୟା ପ୍ରଦାନ କର ତୋର କରୁଣା ହେଲେ ମୁଁ ଜଣେ ମହାପଣ୍ଡିତ ହୋଇ ପାରିବି । ତୁ ଯଦି କୃପା ନ କରିବୁ ତେବେ ତୋର ସମୁଖରେ ଏହି ନଦୀରେ ଜୀବନ ବିସର୍ଜନ କରିବି ।

୦

ଦେବୀ ଦେଖିଲେ କାଳିଦାସ ବୁଝିବାର ବ୍ୟକ୍ତି ନୁହେଁ ତଥାପି ସେ ବୁଝାଇବାକୁ ଯତ୍ନ କରି କହିଲେ କାଳିଦାସ ତୁମେ କ୍ଷାନ୍ତ ହୁଅ । ଜୀବନ ହାରିବା ମହାପାପ । ତୋର ଏହି ଜନ୍ମରେ ବିଦ୍ୟା ନାହିଁ । ମୁଁ କେତେ କପରି ବିଦ୍ୟା ଦେବି ? ତୁ ବିଦ୍ୟାନିମନ୍ତେ ଅଳି ନ କର ମୋତେ

ଅନ୍ୟ କିଛି ମାଗ ମୁଁ ତୋର ମନ କାମନା ପୂରଣ କରି ଦେବି ।

କାଳିଦାସ କାନ୍ଦି କାନ୍ଦି କହିଲେ— ତୁମେ ବିଦ୍ୟା ପ୍ରଦାୟିନୀ ହୋଇ ମୋତେ ଯଦି ବିଦ୍ୟା ଦେଇ ନ ପାରିବୁ ତେବେ ବିଦ୍ୟା ଛଡ଼ା ଅନ୍ୟ ପଦାର୍ଥ ତୋ ଠାରୁ ପାଇ ମୁଁ କି ସୁଖୀ ହେବି । ତୁ ଚାହିଁଲେ ମୂର୍ଖକୁ ମଧ୍ୟ ବିଦ୍ୟା ପ୍ରଦାନ କରି ପାରିବୁ । ମୁଁ ବିଦ୍ୟା ଛଡ଼ା ଅନ୍ୟ କିଛି ଚାହିଁନା ତୋତେ ଯେତେ ବେଳେ ମୁଁ ପାଇଛି ମୁଁ ସବୁ ବିଦ୍ୟା ପ୍ରାପ୍ତ କାହିଁକି ହୋଇ ନ ପାରିବି ମାଁ ।

କାଳିଦାସଙ୍କ ନିଷ୍ଠା ଦେଖି ଦେବୀ ପ୍ରସନ୍ନ ହେଲେ କହିଲେ କାଳିଦାସ ତୋର କେବଳ ଏହି ଜନ୍ମରେ ନୁହେଁ ସାତ ଜନ୍ମ ପର୍ଯ୍ୟନ୍ତ ବିଦ୍ୟାର ସମ୍ଭାବନା ନାହିଁ । ତଥାପି ତୋର ଭକ୍ତି ଶ୍ରଦ୍ଧା, ବିଶ୍ୱାସ ଓ ନିଷ୍ଠା ଦେଖି ତୋ ପ୍ରତି ମୋର କରୁଣା ଜାତ ହେଉଅଛି । ତୁ ଏହି ନଦୀରେ ସାତଥର ବୁଡ଼ି ତୋର ସାତ ଜନ୍ମ ଅତିକ୍ରମ କରେ ତାପରେ ତୁ ବିଦ୍ୟାବନ୍ତ ହୋଇ ପାରିବୁ । ଦେବୀଙ୍କ ମୁଖରୁ ଏ ପରି ଅମୃତୋପମ ବଚନ ଶୁଣିବା ମାତ୍ରେ କାଳିଦାସ ଅତ୍ୟନ୍ତ ପ୍ରେମରେ ନଦୀ ଜଳରେ ସାତ ଥର ବୁଡ଼ି ବୁଡ଼ି ଶେଷରେ ଦୁଇ ପୁଷ୍ପ ପାଇଲେ । ତାଙ୍କର ଦକ୍ଷିଣ ହସ୍ତରେ ଗୋଟିଏ ପଦ୍ମ ପୁଷ୍ପ ଓ ବାମ ହାତରେ ଗୋଟିଏ ନୀଳୋତ୍ପଳ କଢ଼ି ଧରିଥିଲେ ସେ ସେହି ଦୁଇଟି ଦେବୀଙ୍କ ଚରଣରେ ଅର୍ପଣ କରିବା ନିମନ୍ତେ ଓଦା ବସ୍ତ୍ରରେ ନଦୀରୁ ବାହାରି କୂଳରେ ଉଭା ହୋଇଥିବା ଦେବୀଙ୍କ ନିକଟକୁ ଆସିଲେ ।

ଦେବୀଙ୍କୁ ଦର୍ଶନ କରିବା ମାତ୍ରେ ତାଙ୍କର ପାଣ୍ଡିତ୍ୟ ଉଦୟ ହେଲା ସଙ୍ଗେ ସଙ୍ଗେ ସେ ଗୋଟିଏ ଶ୍ଳୋକ ଆବୃତ୍ତି କଲେ ।

ପଦ୍ମମିମଂ ମମ ଦକ୍ଷିଣ ହସ୍ତେ
ବାମ କରେ ଲସଦୁତ୍ପଳ କୋଳମ୍
ବୁଦ୍ଧି କମିଛସି ପଙ୍କଜ ନେତ୍ରେ
କଣ୍ଟକ ନାଳଂ କର୍କଶ ନାଳକାମ୍

ତାଙ୍କର ଶ୍ରୀମୁଖରୁ ପ୍ରଥମ କରି ଏହି ଶ୍ଳୋକ ନିର୍ଗତ ହେବାରୁ ସେ ଅତି ମାତ୍ରାରେ ଆଶ୍ଚର୍ଯ୍ୟ ହୋଇଗଲେ ସେ ମନେ ମନେ ସ୍ଥିର କଲେ ସ୍ତ୍ରୀ ମାନଙ୍କ ବାମ ଭାଗ ଚନ୍ଦ୍ରାତ୍ମକ ଓ ଦକ୍ଷିଣ ଭାଗ ସୂର୍ଯ୍ୟାତ୍ମକ ଏଣୁ କଣ୍ଟକ ମୟ ପଦ୍ମଟି ଦକ୍ଷିଣ ପାଦରେ ଓ କୋମଳ ନାଳ ଉତ୍ପଳ (କଇଁଫୁଲ) ଟି ବାମ ପାଦ ତଳେ ଥୋଇ ଦେଲେ । ଦେବୀ କାଳିଦାସର ବୁଦ୍ଧି ଦେଖି ଖୁବ୍ ସନ୍ତୋଷ ହେଲେ । କହିଲେ ବତ୍ସ ତୁ ଜଣେ ବୁଦ୍ଧିମାନ ପଣ୍ଡିତ ହୁଅ । ବହୁ କାବ୍ୟ ଶାସ୍ତ୍ର ରଚନା କରି ସୁନାମ ଅର୍ଜନ କର । ଅସଂପୂର୍ଣ୍ଣ କବିତାର ଚରଣ ପୂରଣ କରିବାରେ ତୁ ସମର୍ଥ ସହକରେ ରାଜ ଦ୍ୱାରରେ ସମ୍ମାନିତ ହୁଅ ଏବଂ ଦେଶ ବିଦେଶରେ ଯୁଗ ଯୁଗ ପାଇଁ ସୁନାମ ଅର୍ଜନ କର । କାଳିଦାସ ଦେବୀଙ୍କ ଠାରୁ ବର ଲଭି କରି ତାଙ୍କ ମନୋରଞ୍ଜନ କରିବା ପାଇଁ ଏକ ଶ୍ଳୋକ ପୁସ୍ତି ଆବୃତ୍ତି କଲେ —

କଜ୍ଜଳ ପୂରିତ ଲୋଚନ ଧାରେ
ସ୍ତନ ଯୁଗ୍ମ ଶୋଭିତ ମୁକ୍ତା ହାରେ
ବୀଣା ପୁସ୍ତକ ରଞ୍ଜିତ ହସ୍ତେ
ଭଗବତୀ ଭାରତୀ ଦେବୀ ନମସ୍ତେ ।

କାଳିଦାସଙ୍କ ମୁଖରୁ ଏଭଳି ଶ୍ଳୋକଟିଏ ଶୁଣିବାକୁ ଦେବୀ ଭାବି ନଥିଲେ । ଏଥିରେ ପୁତ୍ର ମାଙ୍କ ପାଦ ବନ୍ଦନା ନକରି ମାଙ୍କ ସ୍ତନ ଶୋଭା ମୁଖର ସୌନ୍ଦର୍ଯ୍ୟ ବର୍ଣ୍ଣନା କରୁଛନ୍ତି । ଶୁଣି ଦେବୀ ହଠାତ୍

କୋ ପିତା ଦେଖାଗଲେ । କହିଲେ କାଳିଦାସ ତୁ ପଣ୍ଡିତ ହେଲେ ସୁଦ୍ଧା ଅତ୍ୟନ୍ତ ଉଦ୍ଧତ ଅଛୁ ତୋତେ ନଦୀଗର୍ଭରେ ସାତଥର ଜନ୍ମନେଇ ମୁଁ ତୋର ଜନନୀ ଅଟେ । ତୁ ମାତାଙ୍କୁ କପରି ବନ୍ଦନା କରିବା ଶାସ୍ତ୍ର ସଙ୍ଗତ ବୁଝି ତାହା ରକ୍ଷା କରି ପାରିନାହୁଁ । ତୁ ନାରୀର ସୌନ୍ଦର୍ଯ୍ୟ ପିପାସୁ ଅଛୁ । ଅତଏବ ଜାଣିରଖ ତୁ ନିତ୍ୟ ନିରନ୍ତର ବେଶ୍ୟା ସକ୍ତ ହୋଇ ଶେଷରେ ବେଶ୍ୟା ଦ୍ୱାରରେ ମୃତ୍ୟୁ ବରଣ କରିବୁ । ତୁ ଜଣେ ଶ୍ରେଷ୍ଠ ପଣ୍ଡିତ ଭାବରେ ରାଜ ଦ୍ୱାରରେ ବହୁ ସମ୍ମାନ ଲାଭ କଲେ ସୁଦ୍ଧା ଦକ୍ଷିଣ ଭାଗରେ ତୋର ପରାଜୟ ନିଶ୍ଚୟ ହେବ । ଏତିକ କହି ଦେବୀ ଅନ୍ତର୍ଦ୍ଧାନ ହୋଇଗଲେ । କାଳିଦାସ ନିଜର ଭୁଲ ବୁଝି ପାରି ଅନୁତାପ କଲେ । ସେ ଦେବୀଙ୍କୁ କେତେ ଆକୁଳ ଭାବରେ ଘୋର ଡାକିଲେ କିନ୍ତୁ ଆଉ ଦେବୀଙ୍କ ଦର୍ଶନ ପାଇଲେ ନାହିଁ । କେବଳ ଗୋଟି ମାତ୍ର ଶୂନ୍ୟ ବାଣି ପାଇଲେ ତୁ ଫେରିମା ପଣ୍ଡିତର ସମ୍ମାନ ପାଇବୁ । ଯଶ ଗୌରବ ପାଇବୁ । ତୋର ଅଭିଳାଶ ପୂର୍ଣ୍ଣ ହୋଇଛି ।

କାଳିଦାସ ଅନୁତାପରେ ଭାଙ୍ଗି ପଡ଼ୁଥି । କାହାକୁ ଦୁଃଖ କହିବେ । ଆଉତ ଦେବୀ ନାହାନ୍ତି ଏଣୁ ସେ ପ୍ରଥମେ ନିଜର ସ୍ୱୀଚ୍ଛୁ ନିଜର ବିଦ୍ୟା ବୁଦ୍ଧି ପ୍ରଦର୍ଶନ କରିବାକୁ ଯିବା ଆଗରୁ ଦକ୍ଷିଣ ଭାଗକୁ ମୁଖକରି ବିଦ୍ୟାନଗରୀ ଅଭିମୁଖେ ଯାତ୍ରା କଲେ । କାରଣ ଦେବୀଙ୍କ ବର ସହିତ ତାଙ୍କର ଅଭିଶାପଙ୍କୁ ପ୍ରଥମେ ପରୀକ୍ଷା କରିବା ନିମନ୍ତେ ତାଙ୍କର ଆଗ୍ରହ ଜାତ ହେଉଥିଲା ।

## ବିଦ୍ୟା ନଗରୀ ଯାତ୍ରା—

ସେ ବିଦ୍ୟା ନଗରୀକୁ ଯାଉ ଯାଉ ପଥ ପାର୍ଶ୍ୱରେ ଜଣେ ବୁଢ଼ୀ ଲଇଁ ଲଇଁ ଖଣ୍ଡିଏ ବାଡ଼ି ଧରି ଯାଉଥିବା ଦେଖି କାଳିଦାସଙ୍କ

ମନରେ କୌତୁହଳ ଜାତ ହେଲା ଏଣୁ ସେ ବୁଡ଼ୀକୁ ମଜାରେ ପଚାରିଲେ —ଆଇ କଣ ଖୋଜ ଖୋଜ ଯାଉଛ । ଜଣେ ରୂପବନ୍ତ ଶିକ୍ଷିତ ଯୁବକ ମୁଖରୁ ଏପରି ପରିହାସ ପ୍ରଶ୍ନ ଶୁଣି ବୁଡ଼ୀ କହିଲେ — ବାଟରେ କେତେ ବର୍ଷ ହେଲା ମୋର ଯୌବନଟା କେଉଁଠି ପଡ଼ିଯାଇଛି ତାକୁ ଖୋଜ ଖୋଜ ବାଲୁ ଛୁ ପାଉନ । ତୁ ତ ପଣ୍ଡିତ ମୋର ସେ ଯୌବନଟାକୁ ଖୋଜି ମୋତେ ଦେଇ ପାରିବୁକ ?

କାଳିଦାସ ଲଜ୍ଜିତ ହୋଇ କଛି ଉତ୍ତର ଦେଇ ପାରିଲେ ନାହିଁ ସେ ଦ୍ରୁତ ପଦ କ୍ଷେପରେ ଆଗକୁ ଗଲେ ବାଟରେ କେତେକ ପିଲାଙ୍କୁ ଦେଖି ମନରେ ପଚାରିଲେ ଅୟି ଶିଶବୋ ଯୁଷ୍ମଭି ଦୁଗଧଂ ପିତଂ ? ଅର୍ଥାତ୍ ହେ ଶିଶୁମାନେ ତୁମେ ଦୁଗଧ ପିଉଛକ ? ପିଲାମାନେ ପରିହାସ ରେ କହିଲେ ରେ ମୂଢ଼ ଦୁଗଧଂ ଶ୍ୱେତଂ ନତୁ ପୀତଂ । ଅର୍ଥାତ୍ ରେ ମୁଖ ଯୁବକ ଦୁଗଧର ବର୍ଣ୍ଣ ସବଦା ଶ୍ୱେତ ଅଟେ । ଏହା କେବେ ହେଲେ ପିତ ବା ହଳଦିଆ ନୁହେଁ । ବାଳକ ମାନଙ୍କର ଉତ୍ତର ମଧ୍ୟ ଠିକ୍ ଅଟେ କାଳିଦାସ ଏହା ଶୁଣି ଲଜ୍ଜିତ ହୋଇ ପଳାଇ ଯିବାକୁ ଚାହୁଁ ଥିଲେ ମାତ୍ର ପିଲାମାନେ ତାଙ୍କୁ ନ ଛାଡ଼ି କହିଲେ ଆପଣ ଯେତେବେଳେ ଆମକୁ ଗୋଟିଏ ପ୍ରଶ୍ନ କଲେ ଆମ୍ଭେମାନେ ମଧ୍ୟ ଆପଣଙ୍କୁ ଗୋଟିଏ ପ୍ରଶ୍ନ କରିବୁ ଆପଣ କହନ୍ତୁ । ଏହା କହି ପିଲାମାନେ ବାଡ଼ି ଦ୍ୱାରା ଗୋଟିଏ ବଙ୍କା ବଙ୍କା ରେଖା କାଟି ପଚାରିଲେ ଏଇଟିରୁ ଆପଣ କଣ ବୁଝିଲେ । କାଳିଦାସ ତାହାର ଅର୍ଥ ବୁଝିନପାରି କହିଲେ ଏଇଟା ଏକ ଚୁଚ୍ଛା ଗାର। ପିଲାଏ ହସି ହସି କହିଲେ ପଣ୍ଡିତ ଏଇଟା ଶାସ୍ତ୍ର କଥା ନୁହେଁ । ଏମିତି ବଙ୍କା ବଙ୍କା ଗାର ଦେଖିଲେ ତୃଷା ବୁଝିବ୍ ଏଇବାଟେ

ବାଲୁକୁ ହଳ ଲଙ୍ଗଳ ଯାଉଛୁ । କାଳିଦାସ ଜାଣିଲେ ଏହି ବିଦ୍ୟା ନଗରୀର ପିଲାଠାରୁ ବୁଢ଼ାବୁଢ଼ୀ ପର୍ଯ୍ୟନ୍ତ ସମସ୍ତେ ଚତୁର । ଏଣୁ ସେ କାହା ସହିତ କଥା ନ ହୋଇ ଚାଲିଥାନ୍ତି । ବାଟରେ ଜଣେ କେଉଟ ପିଲା ମାଛ ବିକୁଥିବା ଦେଖିଲେ । ସେ ଅତ୍ୟନ୍ତ ମତ୍ସ୍ୟପ୍ରିୟ ଥିଲେ । ପଇସା ନ ଦେଇ କଥା କଥାକେ ଠକି ଗୋଟିଏ ମାଛ ନେଇ ଗୋଟିଏ ନିରୋଳା ସ୍ଥାନରେ ରନ୍ଧନର ବ୍ୟବସ୍ଥା କଲେ । କେଉଟ ପୁଅଠାରୁ ସବୁ କଥା ଶୁଣି ଖୋଜି ଖୋଜି କାଳିଦାସଙ୍କ ପାଖରେ ପହଞ୍ଚିଲା । ସେ ମଧ ତାର ବୁଦ୍ଧି ପ୍ରୟୋଗ କରି କାଳିଦାସଙ୍କୁ କିଛି ଓଉଫଳ ପ୍ରଦାନ କଲା ଏବଂ କୌଶଳକ୍ରମେ କାଳିଦାସ ରାନ୍ଧିଥିବା ମାଛତକ ଖାଇ ଚାଲିଗଲା । ହାଣ୍ଡିରେ କେବଳ କଣ୍ଟାତକ ଦେଖି କାଳିଦାସ ଜାଣିଲେ ଯେ ସେ ଦେବୀ ସରସ୍ୱତୀଙ୍କ ଅଭିଶାପ ଫଳରେ ଦକ୍ଷିଣରେ ନଷ୍ଟପ୍ରାୟ ହୋଇବେ । ଏଣୁ ସେ ତୁରନ୍ତ ବିଦ୍ୟାନଗରୀ ତ୍ୟାଗ କରି ଗୌଡ଼ ଦେଶ ଅଭିମୁଖେ ଯାତ୍ରା କଲେ ।

## ରତ୍ନାବତୀଙ୍କ ସହିତ ଭେଟ—

ରତ୍ନାବତୀଙ୍କ ଠାରୁ ଅପମାନ ପାଇ କାଳିଦାସ ଲୁଚି ଚାଲିଯିବା ପରେ ରତ୍ନାବତୀ ମୌନ ବ୍ରତରେ ଦୃଢ଼ ରହିଛନ୍ତି । ମଣିକେଶ୍ୱରଙ୍କ ମନରେ ଘୋର ଦୁଃଖ । ଜାମାତାଙ୍କ ଅନୁସନ୍ଧାନରେ ଯାଇଥିବା ଚରମାନେ କେହି ଏଯାଏଁ ଫେରି ନାହାନ୍ତି । ରାଜ୍ୟର ସବୁଆଡ଼େ ଏଇ କଥା । ପଣ୍ଡିତମାନେ କୂଟ କରି ରତ୍ନାବତୀ ପରି ବୁଦ୍ଧିମତୀ, ଗୁଣବତୀ, ଚତୁରା, ପଣ୍ଡିତା କନ୍ୟାକୁ ଗୋଟିଏ ମୂର୍ଖ ସହିତ ବିବାହ କରାଇ ଦେଇ ତାଙ୍କ ଅପମାନିତ କରିଛନ୍ତି । ଜାମାତାଙ୍କ ସନ୍ଧାନ

ନ ମିଳିବା ଫଳରେ ରାଜାଙ୍କ ମନରେ ସୁଖ ନାହିଁ । ରାଜାଙ୍କ ଦୁଃଖରେ ପ୍ରଜାମାନଙ୍କ ମନରେ ଶାନ୍ତି ନାହିଁ । ସାରା ଗୌଡ଼ ରାଜ୍ୟରେ ଦୁଃଖର ସ୍ରୋତ ପ୍ରବାହିତ ହେଉ ଅଛି ।

ହଠାତ୍ କାଳିଦାସଙ୍କ ଆଗମନ ବାର୍ତ୍ତା ଶୁଣାଗଲା । କାଳିଦାସ ଏକ ପାଲିଙ୍କି ଉପରେ ବସି ରାଜ ନଗରରେ ପ୍ରବେଶ କଲେ । ରାଜ ମନ୍ତ୍ରୀମାନେ ମହା ସମାରୋହରେ ତାଙ୍କୁ ରାଜାଙ୍କ ପାଖକୁ ନେଲେ । ରାଜା ଜାମାତା କାଳିଦାସଙ୍କୁ ପାଇ ପରମ ସନ୍ତୋଷ ହେଲେ ଓ ନିଜ ସାଙ୍ଗରେ ଧରି କନ୍ୟାଙ୍କ ଭବନକୁ ଯାତ୍ରା କଲେ ।

ରାଜଜେମା ରତ୍ନାବତୀ କାଳିଦାସଙ୍କ ମୁଖ ଅବଲୋକନ କରିବେ ନାହିଁ ବୋଲି ଆଗରୁ ସ୍ଥିର କରିଥିଲେ । ଏଣୁ କାଳିଦାସ ଆସୁଥିବା କଥା ଶୁଣିବା ମାତ୍ରେ ସେ କ୍ରୋଧରେ ପ୍ରଜ୍ୱଳିତ ହୋଇ ନିଜ କୋଠରୀର ଦ୍ୱାର ବନ୍ଦ କରିଦେଲେ ।

ରାଜା କନ୍ୟାର ଏହି ମନ ବେଦନା ଦେଖି ମର୍ମାହତ ଦୁଃଖ ଅନୁଭବ କଲେ । ଦ୍ୱାର ଖୋଲିବା ନିମନ୍ତେ କାଳିଦାସ ନିଜେ ରତ୍ନାବତୀଙ୍କୁ ଅନୁରୋଧ କଲେ । କାଳିଦାସଙ୍କ ପ୍ରୀତିପୂର୍ଣ୍ଣ ମଧୁମୟ ଲଳିତ ବଚନ ରତ୍ନାବତୀଙ୍କ କ୍ରୋଧକୁ ଆହୁରି ବଢ଼ାଇ ଦେଲା । ତେଣୁ ସେ ଦ୍ୱାର ଆର ପଟରେ ରହି ରୁକ୍ଷ ସ୍ୱରରେ କହିଲେ—

'ଅସ୍ତି କଶ୍ଚିତ୍ ବାଗବିଶେଷଃ''

ଅର୍ଥାତ୍ କେଉଁ ବଚନର ବୈଶିଷ୍ଟ୍ୟ ରହିଛି ବା ଏଠାରେ ତୁମର କଣ କହିବାର ଅଛି ? ଗୁରୁଜନମାନେ ପଣ୍ଡିତା କନ୍ୟାର ସ୍ୱାମୀ ମୂର୍ଖ ବରର

ବଚନ ଶୁଣି ନିଜେ ଲଜ୍ଜାବୋଧ କଲେ କିନ୍ତୁ କାଳିଦାସ ଅମ୍ଳାନ ବଦନରେ ସେହି ଦ୍ୱାର ସମ୍ମୁଖରେ ଠିଆ ହୋଇ ଅସ୍ତି, କଶ୍ଚିତ୍ ଓ ବାଗ୍ ବିଶେଷ ଏହି ତିନୋଟି ଶବ୍ଦ ଆଦ୍ୟରେ ପ୍ରୟୋଗ କରି ତିନୋଟି କାବ୍ୟର ଶ୍ଳୋକମାନ ଗାୟନ କଲେ । ଏହି କାବ୍ୟତ୍ରୟ ହେଉଛି କୁମାର ସମ୍ଭବ, ମେଘଦୂତ ଓ ରଘୁବଂଶ । ଏହି ତିନୋଟି ଭାରତୀ ଭଣ୍ଡାରର ତିନୋଟି ଅମୂଲ୍ୟ ରତ୍ନ । ଏହି ତିନୋଟି ଗ୍ରନ୍ଥ କାଳିଦାସଙ୍କୁ ଜଣେ ମହାମାନବରେ ପରିଣତ କରି ଦେଇଛି । ଏହି ତିନୋଟି ଦ୍ୱାରା କାଳିଦାସ ବାସ୍ତବିକ ସରସ୍ୱତୀଙ୍କ ବରପୁତ୍ର ବୋଲି ଜଣାଯାଏ । ଭାଷା ଶୈଳୀ ଛନ୍ଦ ଶବ୍ଦର ଆଡ଼ମ୍ବର ଓ ଆଳଙ୍କାରିକ ଭାଷା ଓ ଶବ୍ଦ ବିନ୍ୟାସ ଯୁଗ ଯୁଗ ନିମନ୍ତେ ନୂତନ ହୋଇ ରହିଅଛି । ଅର୍ଥର ଚମତ୍କାର ଓ ଭାବର ଗୌରବ ରକ୍ଷା କରି କବି ଗାଇଗଲେ ଅସ୍ତି ଶବ୍ଦକୁ ଧରି କୁମାର ସମ୍ଭବରୁ ଗାଇଲେ—

ଅସ୍ତ୍ୟୁତ୍ତରସ୍ୟାଂ ଦିଶି ଦେବତାତ୍ମା
ହିମାଳୟୋ ନାମ ନଗାଧିରାଜଃ
ପୂର୍ବାପରୌ ତୋୟନିଧି ବଗାହ୍ୟ
ସ୍ଥିତଃ ପୃଥିବ୍ୟା ଇବ ମାନଦଣ୍ଡଃ

ତାପରେ 'କଶ୍ଚିତ୍' ଶବ୍ଦକୁ ଲକ୍ଷ୍ୟ କରି ମେଘଦୂତ ଗାନକଲେ—

କଶ୍ଚିତ୍ କାନ୍ତା ବିରହ ଗୁରୁଣା
ସ୍ୱାଧିକାରାତ୍ ପ୍ରମତ୍ତଃ
ଶାପେ ନାସ୍ତଂ ଗମିତ ମହିମା
ବର୍ଷ ଭୋଗ୍ୟେଣ ଭର୍ତ୍ତୁଃ

ତାପରେ ଶେଷ ଶବ୍ଦ ବାଗ ବିଶେଷଃକୁ ନେଇ ରଘୁବଂଶରୁ ଗାଇଲେ —

ବାଗାର୍ଥା ବିବସଂ ପୃକ୍ତୌ
ବାଗର୍ଥ ପ୍ରତି ପତ୍ତୟେ
ଜଗତ ପିତରୌ ବନ୍ଦେ୍ୟ
ପାର୍ବତୀ ପରମେଶ୍ବରୌ

## ବିଧିର ବିଚିତ୍ର ଇଚ୍ଛା—

ଏପରି 'ଅସ୍ତି' 'କଶ୍ଚିତ୍' 'ବାଗବିଶେଷଃ' ତିନୋଟି ପଦକୁ ଆଦ୍ୟରେ ପ୍ରୟୋଗ କରି ଅତି ପାଣ୍ଡିତ୍ୟ ପୂର୍ଣ୍ଣ ତିନୋଟି କାବ୍ୟ କାଳିଦାସଙ୍କ ମୁଖରୁ ଶୁଣି ରତ୍ନାବତୀ ତଟସ୍ଥ ହୋଇ ପଡିଲେ । ଯେ ଯେ ଓଷ୍ଟ୍ରକୁ ଓଷ୍ଟ୍ର ଓଟ୍ର ଏପରି କହୁଥିଲେ ସେ କିପରି ଏତେ ପାଣ୍ଡିତ୍ୟପୂର୍ଣ୍ଣ ଶବ୍ଦାଳଙ୍କାର ଏବଂ ଅର୍ଥାଳଙ୍କାର ମୁକ୍ତ ତିନୋଟି ମହାକାବ୍ୟ ଚୁଟ୍କେ ଚୁଟ୍କେ ଗାଇପାରିଲେ । ମାତ୍ର ଦିନ ପଚିଶିଟାରେ ଜଣେ ମହାମୂର୍ଖ ଜଣେ ମହାକବି ହୋଇପାରିବ ଏହା ସମ୍ଭବ ନୁହେଁ । ସେ ଭାବି ଭାବି ଲଜ୍ଜିତ ହେଲେ । ସେ ଶେଷକୁ ସ୍ଥିର କଲେ ଯେ ତାଙ୍କର ସ୍ୱାମୀ ବାସ୍ତବିକ ପଣ୍ଡିତ ଥିଲେ । ପଣ୍ଡିତମାନେ ତାଙ୍କର ଅମଙ୍ଗଳ କରିନାହାନ୍ତି ବରଂ ତାଙ୍କ ପ୍ରତି ଦୟାଯୁକ୍ତ ହୋଇ ସେମାନେ ତାଙ୍କର ମଙ୍ଗଳ ନିମନ୍ତେ ତାଙ୍କୁ ଜଣେ ପଣ୍ଡିତଙ୍କ ସହିତ ବିବାହ କରାଇଥିଲେ । ସ୍ୱାମୀ କୌତୁକପ୍ରିୟ ଅଟନ୍ତି । ତାଙ୍କ ମନ ବୁଝିବା ନିମନ୍ତେ ସେ ମୂର୍ଖ ପରି ଛଳନା କରୁଥିଲେ । ସେ ଜଣେ ପଣ୍ଡିତା ରମଣୀ ହୋଇ ପୁରୁଷଙ୍କ ଏହି ପରିହାସ ବୁଝି ନପାରି ସ୍ୱାମୀ ଦେବତାଙ୍କୁ ଘୋର ଅପମାନ ଦେଇଛନ୍ତି ଓ ପଦାଘାତ କରିଛନ୍ତି । ମୌନବ୍ରତ କରି

ରାଜ୍ୟ ସାରା ସ୍ୱାମୀଙ୍କର ମୂର୍ଖତା ପ୍ରଚାର କରିଛନ୍ତି । ସେ ଜଣେ ବୋଲି କ୍ଷମା ମାଗିବେ ଆଉ ସ୍ଥିର କରିପାରିଲେ ନାହିଁ । ଭାବିଲେ କାଳିଦାସଙ୍କ ପରି ଜଣେ ମହା ପଣ୍ଡିତଙ୍କ ସ୍ତ୍ରୀ ହେବା ନିମନ୍ତେ ସେ କୌଣସି ଗୁଣରେ ସମାନ ନୁହନ୍ତି ।

ସେ ସ୍ୱାମୀଙ୍କୁ ଭର୍ତ୍ସନା କରି ଭୂମିକୁ ତିନିଥର ଯେଉଁ ପଦାଘାତ କରିଥିଲେ । ସେଥି ନିମନ୍ତେ ଅନୁତାପ କରି ଦୁଃଖରେ ବାକ୍ ଶୂନ୍ୟ ହୋଇ ପଡିଲେ । ସେ ସ୍ୱୀୟ ଦେବତୁଲ୍ୟ ପତି ନିକଟରେ ପ୍ରାୟଶ୍ଚିତ୍ତ କରିବାକୁ ମନରେ ଦୃଢ଼ ନିଶ୍ଚୟ କଲେ । ପତିଙ୍କୁ ମୁହଁ ଦେଖାଇବା ନିମନ୍ତେ ଲଜ୍ଜା ପ୍ରକାଶ କରି ନିଜେ ନିଜର ଜିହ୍ୱାକୁ ସ୍ୱହସ୍ତରେ ଉପାଡି ଦେଇ ମୃତ୍ୟୁ ବରଣ କଲେ ।

ସକାଳର ଶୋଇ ଖୋଲିଗଲା । ଦାସୀମାନେ ଦ୍ୱାର ଖୋଲିଲେ । କାଳିଦାସ ନିଜ ସ୍ତ୍ରୀଙ୍କ ଏହି ଦୁରବସ୍ଥା ଦେଖି ହାୟ ହାୟ କଲେ । ରାଜ୍ୟ ସାରା ଦୁଃଖର ଛାୟା ଖେଳିଗଲା । କାଳିଦାସ ଆଉ ନିମିଷେ ସେହି ରାଜପୁରୀରେ ନ ରହି ସ୍ୱଗୃହାଭିମୁଖେ ଗମନ କଲେ ।

## ମା'ଙ୍କ ସାନ୍ତ୍ୱନା

କାଳିଦାସଙ୍କ ମନରେ ଶାନ୍ତି ନାହିଁ, ସୁଖ ନାହିଁ । ଅନେକ ବାଟ ବୁଲି ବୁଲି ନିଜ ଘରେ ପହଞ୍ଚିଲେ । ମାଙ୍କ ମନରେ ନାନା ଦୁଃଶ୍ଚିନ୍ତା କାଠ ଆଣିବାକୁ ଯାଇ ଛଅ ମାସେ ହେଲା କାଳି କୁଆଡେ଼ ଗଲା ତାହାର ଖବର ମିଳୁ ନାହିଁ । ସାନ ଝିଅଟି ନିତି ଗାଁରୁ ଗାଁକୁ ବୁଲି ଭାଇକୁ ଖୋଜି ଖୋଜି ଘରକୁ ଫେରୁଛି । ମା ଏଣେ କେତେ ଦିଅ

ଦେବତାଙ୍କୁ କେତେ ଜଣ ମାନସିକ କରି ଥକ ଗଲେଣି । ସବଜାଣି-ମାନେ କହନ୍ତି କାଳ ଭଲରେ ଫେରିବ ।

ସତକୁ ସତ କାଳିଦାସ ଫେରିଛନ୍ତି ଏକ ଅନ୍ଧକାର ରଜନୀରେ ମା ଓ ସାନ ଭାଇ ଦୁଃଖ ଚିନ୍ତା ଓ ଶୋକରେ ନଖାଇ ଭୋକରେ ଶୋଇଥିବା ବେଳେ କାଳିଦାସ ଦ୍ୱାରରେ ଆଘାତ କଲେ । ଭାଇ ଓ ମା ଧଡ଼ପଡ଼ ଉଠି କାଳିଦାସଙ୍କୁ ଦେଖି ଆନନ୍ଦରେ କାନ୍ଦି ପକାଇଲେ । ଅନ୍ଧାର ଘରେ ସେହି କଣାଅନ୍ଧି ସମୟରେ ଦୀପ ଜଳି ଉଠିଲା । କାଳିଦାସ ଦିନ ଦିନ କରି ଘଟଣା ବର୍ଣ୍ଣନା କରି ଘରୁ ଯିବାଠାରୁ ଘରକୁ ଫେରିବା ପର୍ଯ୍ୟନ୍ତ ସବୁ କହିଗଲେ । ଏ ଏକ ସ୍ୱପ୍ନର କାହାଣୀ ପରି ମା ଓ ସାନ ଭାଇ କାଳିଦାସଙ୍କ ମୁଖରୁ ସବୁ ଶୁଣି ତଟସ୍ଥ ହୋଇ ପଡ଼ିଲେ ।

ରତ୍ନାବତୀଙ୍କ ବିବାହ ସରସ୍ୱତୀଙ୍କ ବିଦ୍ୟା ଦାନ ଶୁଣି ମା ଯେପରି ଆନନ୍ଦ ହେଲେ ରତ୍ନାବତୀଙ୍କ ମୃତ୍ୟୁ କଥା ଶୁଣି ସେ ସେପରି ଦୁଃଖରେ ଭାଙ୍ଗି ପଡ଼ିଲେ । ଶେଷରେ ମା କହିଲେ—ହେଉ ତୁ ତ ଆଗର କାଳି ନୁହଁ ତୋ ପାଇଁ କେତେ କନ୍ୟା ଅଭାବ ହେବେ । ତୋ ତୁଣ୍ଡରୁ ଶାସ୍ତ୍ର ଶୁଣିଲେ ଲୋକେ ତୋତେ କେତେ କନ୍ୟା ଯାଚି ଆସିବେ । ତୁ ଧୈର୍ଯ୍ୟ ଧର । ରତ୍ନବତୀ କଥା କେବେ ଚିନ୍ତା କରନା । ଆମେ ଗରିବ ଲୋକ ସେ ଆମର ନୁହେଁ । ଆମେ ଗରିବ ଘରୁ ଭଲ ଝିଅ ଆଣିବା ।

କାଳିଦାସ କହିଲେ ମାଁ, ଯେ ଘିଅ ପିଠା ଦେଖିଛି, ସେ କଣ ଚକିପିଠା ଖାଇବ । ନା ନା ମୁଁ ଆଉ ବିବାହ କରିବି ନାହିଁ ।

ରତ୍ନାବତୀ ଇହ ଜଗତରେ ନାହିଁ ସିନା ମୋର ମନରାଜ୍ୟରେ ସେ ସବୁବେଳେ ରହିଛି । ମୁଁ ବିବାହ କରି ତାକୁ ଆଉ ଅଧିକ କଷ୍ଟ ଦେବାକୁ ଚାହୁଁ ନାହିଁ । ସେ ମୋତେ ଅପମାନ ଦେଇ ମୋର ଚକ୍ଷୁ ଖୋଲି ଦେଇଛି । ମୁଁ ତା'ର ଜିଜ୍ଞାସ ଯୋଗୁଁ ସରସ୍ୱତୀଙ୍କ ଦର୍ଶନ ପାଇ ବିଦ୍ୟା ପାଇଛି ସିନା । ତାର ଯୋଗୁଁ ଆଜ ମୋର ବିଦ୍ୟା, ବୁଦ୍ଧି, ଜ୍ଞାନ, ଶାସ୍ତ୍ର ସବୁ କହୁ । ଏଣୁ ମୁଁ କଦାପି ରତ୍ନାବତୀକୁ ଭୁଲିପାରିବି ନାହିଁ । ସେ ଆରପୁରରେ ଥିଲେ ସୁଦ୍ଧା ମୁଁ ଏ ପୁରରେ ରହି ତା'ର ଗୁଣ ଗାନ କରି କାଳଯାପନ କରିବାକୁ ସ୍ଥିର କରିଛି । ପୁଅର ମୁଖରୁ ଏପରି ଶୁଣି ମା ଆଉ କିଛି ବୋଲାଇ କହି ପାରିଲେ ନାହିଁ ।

ସେ ନିଜର ପ୍ରତିଭାର ବିକାଶ କରିବା ପାଇଁ ଉପଯୁକ୍ତ କ୍ଷେତ୍ର ଅନୁସନ୍ଧାନରେ ବାହାରିଲେ । ରାଜା ବିକ୍ରମାଦିତ୍ୟ କାଳିଦାସଙ୍କ ପ୍ରତିଭା ଲୋକ ମୁଖରୁ ଶୁଣି ତାଙ୍କୁ ନିଜର ସଭା ପଣ୍ଡିତ ରୂପେ ନିଯୁକ୍ତ କଲେ । ତାଙ୍କ ରାଜ ଦରବାରରେ ଆଉ ଆଠ ଜଣ ଦିଗ୍‌ବିଜୟୀ ପଣ୍ଡିତ ଥିଲେ, ସେମାନଙ୍କ ହେଲେ ଧନ୍ୱନ୍ତରୀ, କ୍ଷେପଣକ, ଅମରସିଂହ, ଶଙ୍କୁ, ବେତାଳ ଭଟ୍ଟ, ଘଟକର୍ପର, ବରାହମିହିର ଓ ବରରୁଚି । ଏମାନେ ସାହିତ୍ୟ, ଚିକିତ୍ସା, ଦର୍ଶନ, ଜ୍ୟୋତିଷ ପ୍ରଭୃତି ବିଭିନ୍ନ ଶାସ୍ତ୍ରରେ ଗଭୀର ଜ୍ଞାନ ଅର୍ଜନ କରିଥିଲେ । କାଳିଦାସ ଏକାଧାରରେ ପଣ୍ଡିତ, କବି, ଶାନ୍ତିଜ୍ଞ, ତ୍ରିକାଳଦର୍ଶୀ ଓ ଜ୍ୟୋତିଷ ବିଶାରଦ ଥିଲେ । ଏଣୁ କେହି ତାଙ୍କୁ ପରାଜିତ କରିପାରୁ ନଥିଲେ । ରାଜ ଦ୍ୱାରରେ କବିଙ୍କର ଗୌରବ ବଢୁଥିଲା । ଏହା ଦେଖି ଅନ୍ୟ ପଣ୍ଡିତମାନେ ଅସୂୟା ପ୍ରକାଶ କରୁଥିଲେ ମଧ୍ୟ ମୁହଁରେ ପ୍ରକାଶ କରି କହିପାରୁ ନଥିଲେ କହିପାରୁ ନଥିଲେ, କାରଣ ରାଜା ବିକ୍ରମାଦିତ୍ୟ କାଳିଦାସଙ୍କୁ ସବୁ ପଣ୍ଡିତମାନଙ୍କ ମଧ୍ୟରେ

ଅଗ୍ରାଧିକାର ଦେଉଥିବାରୁ ଅନ୍ୟ ପଣ୍ଡିତମାନେ ନୀରବ ରହିବା ଛଡ଼ା ଅନ୍ୟ ଉପାୟ ପାଉ ନଥିଲେ ।

କାଳିଦାସ ରାଜାଙ୍କୁ ନୂତନ ନୂତନ ଶ୍ଲୋକ ଶୁଣାଇ ବହୁ ଧନରତ୍ନ ପାଉଥିଲେ, ରାଜା ନିଜେ ଜଣେ ପଣ୍ଡିତ ଥିଲେ । ଏଣୁ ସଂସ୍କୃତ ସାହିତ୍ୟ ଭଣ୍ଡାରର ଶ୍ରୀବୃଦ୍ଧି କରିବା ନିମନ୍ତେ ପଣ୍ଡିତମାନଙ୍କୁ ଉତ୍ସାହ ଦେଉଥିଲେ । କାଳିଦାସ ଭାରତୀୟ ନାଟ୍ୟ ଶାସ୍ତ୍ରର କଳା ବିକାଶ କରି ଶକୁନ୍ତଳା, ବିକ୍ରମୋର୍ବଶୀୟ, ମାଳବିକାଗ୍ନିମିତ୍ର ନାଟକ ରଚନା କଲେ । ଏହି ନାଟକ ସବୁ କାଳିଦାସଙ୍କ ପ୍ରତିଭା ବିକାଶ କରିବା ସଙ୍ଗେ ସଙ୍ଗେ ବିକ୍ରମାଦିତ୍ୟଙ୍କ ଗୌରବ ଗାନ କରୁଥିଲେ । ଏତଦ୍ ବ୍ୟତୀତ ସେ ରଘୁବଂଶ, କୁମାରସମ୍ଭବ, ମେଘଦୂତ, ଋତୁସଂହାର ପ୍ରଭୃତି କାବ୍ୟ ରଚନା କରି ଭାରତୀୟ ସଂସ୍କୃତିର ବିକାଶ କରି ପାରିଲେ ।

ଏହି ଗ୍ରନ୍ଥ ରଚନା କରିବା ପରେ କାଳିଦାସଙ୍କର ଭୂରିଭୂରି ପ୍ରଶଂସା ସାରା ଭାରତରୁ ଭାସି ଆସିଲା । ବିକ୍ରମାଦିତ୍ୟ ବହୁ ଧନରତ୍ନରେ କବିଙ୍କୁ ଆପ୍ୟାୟିତ କଲେ । ବେଶ୍ୟାସକ୍ତ କାଳିଦାସଙ୍କ ଏକ ଦୁର୍ବଳତା ଥିଲା । ଏଣୁ ଏତେ ଧନ ପାଇ ସୁଦ୍ଧା ସେ ବେଶ୍ୟାଳୟରେ ତାହା ଅକାତର ଭାବରେ ଅଜାଡ଼ି ଦେଇ ନିଃସ୍ୱ ବ୍ୟକ୍ତି ପରି ଜୀବନାତିପାତ କରୁଥିଲେ । କାଳିଦାସ ଧନ ନେଇ ବେଶ୍ୟାଙ୍କୁ ତୃପ୍ତ କରିବା ପାଇଁ ରାଜାଙ୍କଠାରୁ ଧନ ପାଇବା ଆଶାରେ ନିତ୍ୟ ନୂତନ ନୂତନ ଶ୍ଲୋକ ରଚନା କରୁଥିଲେ ।

ସେହି ନୂତନ ନୂତନ ଶ୍ଲୋକ ଶ୍ରବଣ କରି ରାଜା ପରମ ସନ୍ତୋଷ ଲାଭ କରୁଥିଲେ ଏବଂ କାଳିଦାସଙ୍କୁ ବିପୁଳ ଧନରତ୍ନରେ ତୃପ୍ତ

କରୁଥିଲେ । ଶାସ୍ତ୍ରରେ ଅଛି—

"ଗୁଣିକା ଗଣିକା ବପ୍ରା ବୈଦ୍ୟ ବେତାଳ କୁକୁର,
ଦୃଷ୍ଟି ମାତ୍ରେ ପ୍ରକୋପନ୍ତ ସ୍ୱଜାତି ପରହିଂସ୍ରିକା ॥

ଗୁଣବାନ ହେଲେ ସୁଦ୍ଧା ପଣ୍ଡିତମାନେ ପଣ୍ଡିତମାନଙ୍କର 'ପ୍ରଶଂସା ସହ୍ୟ କରିପାରୁ ନଥିଲେ । ସେମାନଙ୍କ ସମ୍ମୁଖରେ କାଳିଦାସ ଏକା ଏକା ନିତ୍ୟ ଏତେ ଧନରତ୍ନ ପୁରସ୍କାର ପାଇବେ ଆଉ ସେମାନେ ସେହି ଶ୍ଳୋକ ଠିକ୍ ହୋଇଛି କହି ମୁଣ୍ଡ ହଲାଇବେ । ସେମାନଙ୍କୁ ବଡ଼ ଅସହ୍ୟ ବୋଧ ହେଲା । ସେମାନେ କାଳିଦାସଙ୍କୁ ରାଜସଭାରୁ କିପରି ତଡ଼ିବେ ତାହାର ଚିନ୍ତା କରୁଥିଲେ । ଠିକ୍ ଏହି ସମୟରେ ଦୈବ ଯୋଗେ ଏକ ଘଟଣା ଘଟିଗଲା ।

## ପୁଟିଷ୍ଟେ କୀଟ—

ଜଣେ ଅତି ନିପୁଣ କଳାକାର ରାଜା ବିକ୍ରମାଦିତ୍ୟଙ୍କ ରାଜସଭାରେ ଉପସ୍ଥିତ ହେଲେ । ସେ ଅତି ଉତ୍ତମ ଚିତ୍ର ଅଙ୍କନ କରିପାରୁଥିଲେ । ରାଜାଙ୍କ ପରାମର୍ଶ କ୍ରମେ ରାଣୀ ଭାନୁମତୀଙ୍କର ଏକ ତୈଳ ଚିତ୍ର ଅଙ୍କନ କରିବାକୁ ଚିତ୍ରକରଙ୍କୁ ଆଦେଶ ଦିଆଗଲା । ଅଳ୍ପ ଦିନ ଭିତରେ ଚିତ୍ରକାର ଅତି ରମଣୀୟ ଚିତ୍ରଟି ଧରି ଆସି ରାଜ ସଭାରେ ଉପସ୍ଥିତ ହେଲେ । ରାଜା ସମସ୍ତ ପଣ୍ଡିତଙ୍କୁ ଚିତ୍ରଟି କିପରି ଅଛି ବୋଲି ପଚାରି ସେମାନଙ୍କ ମତାମତ ଲୋଡ଼ିଲେ । ସବୁ ପଣ୍ଡିତ ଏକ ସ୍ୱରରେ ଚିତ୍ରକରଙ୍କ କଳାର ପ୍ରଶଂସା କରି କହିଲେ, ମହାରାଣୀ ଭାନୁମତୀଙ୍କ ଚିତ୍ର ସମ୍ପୂର୍ଣ୍ଣ ଠିକ୍ ଅଛି । ପଣ୍ଡିତମାନଙ୍କ ମଧ୍ୟରେ ଜଣେ ମାତ୍ର କିଛି ନ କହି ନୀରବ ଥିଲେ ସେ ହେଉଛନ୍ତି ବିକ୍ରମାଦିତ୍ୟଙ୍କ ଅତି ପ୍ରିୟ ପଣ୍ଡିତ

କାଳିଦାସ । ରାଜା କାଳିଦାସଙ୍କ ମାରବତା ଦେଖି ପଚାରିଲେ, ତୁମେ କିଛି କହିଲ ନାହିଁ ଯେ, କାଳିଦାସ ନମ୍ରଭାବେ କହି ପକାଇଲେ, ଏ ଚିତ୍ର ଠିକ୍ ନୁହେଁ । ଚିତ୍ରକର କାଳିଦାସଙ୍କ ମୁଖରୁ ଏପରି ଉତ୍ତର ଆଶା କରି ନଥିଲେ । ସେ ଶୁଣୁଶୁଣୁ ବସିଯାଇ ହାତରେ ଧରିଥିବା ତୁଳିଟିକୁ ଫୋପାଡ଼ ଦେଇ କହିଲେ ନା କଦାପି ନୁହେଁ । ଭୁଲ ଥିଲେ ମୁଁ ଆଉ ତୁଳି ଧରିବ ନାହିଁ । ତହୁଁ କାଳିଦାସ କାଳ ବିଳମ୍ବ ନକରି କହିଲେ—ହଁ ଏ ଚିତ୍ର ସମ୍ପୂର୍ଣ୍ଣ ନିର୍ଭୁଲ । ରାଜା କାଳିଦାସଙ୍କ ମୁଖରୁ ଦୁଇ ପ୍ରକାର ଉତ୍ତର ଶୁଣି ତାର ମର୍ମ କିଛି ବୁଝିପାରିଲେ ନାହିଁ, କହିଲେ ପଣ୍ଡିତେ ତୁମେ ଚିତ୍ରକରଙ୍କୁ ଭୟ କରି ଏପରି କହୁଛ ବୋଧହୁଏ । କାଳିଦାସ କହିଲେ—ନା ମହାରାଜ କାଳିଦାସ କେବେ କାହାକୁ ଭୟ କରି ଜାଣେନା । ପ୍ରଥମ ଥର କହିଲାବେଳେ ଚିତ୍ରଟି ଭୁଲ ଥିଲା, ବର୍ତ୍ତମାନ ଶିଳ୍ପୀ ରାଗରେ ତୁଳି ଟି ଫିଙ୍ଗିଦେବାରୁ ଫଳରେ ଏକ ବିନ୍ଦୁ କଳା ଯାଇ ରାଣୀଙ୍କର ବାମ ଜାନୁରେ ପଡ଼ିଲା ଦେଖନ୍ତୁ । ରାଣୀଙ୍କର ବାମ ଜାନୁରେ ଏକ ତିଳ ଚିହ୍ନ ଅଛି । ସେଇଟା ଶିଳ୍ପୀ ଛାଡ଼ି ଦେଇଥିଲେ ଏଣୁ ବର୍ତ୍ତମାନ କଳା ବିନ୍ଦୁଟି ସେଇଠି ପଡ଼ିଲା । ଏଣୁ ଚିତ୍ର ଠିକ୍ ଅଛି ବୋଲି ମୁଁ କହୁଛି ।

ରାଜା ଆଶ୍ଚର୍ଯ୍ୟ ହୋଇଗଲେ । ସେତ କେବେ ହେଲେ ରାଣୀ ଭାନୁମତୀଙ୍କ ଜାନୁରେ କଳା ଜାଇ ଦେଖି ନାହାନ୍ତି । ସେ ପରୀକ୍ଷା କରିବା ନିମନ୍ତେ ରାଣୀ ଅନ୍ତଃପୁରକୁ ଗଲେ । ପ୍ରତ୍ୟକ୍ଷରେ ରାଣୀଙ୍କ କଳା ଜାଇ ଦେଖି ରାଜା ଆଶ୍ଚର୍ଯ୍ୟ ହେଲେ । କାଳିଦାସ ନାରୀପ୍ରିୟ ଥିବା ଜାଣି ସେ ମନରେ ସନ୍ଦେହ କଲେ । ସେ ରାଣୀଙ୍କର ଗୁପ୍ତ ଅଙ୍ଗରେ ତିଳ ଚିହ୍ନ ଥିବା ଜାଣିଲେ କପରି ।

ସେତ ଜଣେ ଚରିତ୍ରଭ୍ରଷ୍ଟା ବେଶ୍ୟାଶକ୍ତ ବ୍ୟକ୍ତି । ତାଙ୍କୁ ଫେରେ ରାଜପୁରରେ ଅବାଧ ପ୍ରବେଶ ଅଧିକାର ଅଛି । ଏଣୁ ସେ ରାଣୀଙ୍କ ସହିତ ପାପ କର୍ମରେ ଲିପ୍ତ ଥାଇ ପାରନ୍ତି । ରାଜା ଏପରି ସନ୍ଦେହ କରି କାଳିଦାସଙ୍କୁ ହତ୍ୟା କରିବା ପାଇଁ ଘାତୁକମାନଙ୍କୁ ଆଦେଶ ଦେଲେ । କିନ୍ତୁ କବି ଭବଭୂତିଙ୍କ ପ୍ରଚେଷ୍ଟାରୁ ସେ ବଞ୍ଚିଗଲେ ଓ ଘାତକମାନେ ଅନ୍ୟ ଜୀବ ମାରି ତାର ରକ୍ତ ରାଜାଙ୍କୁ ଦେଖାଇ ରାଜାଙ୍କ କ୍ରୋଧ ଶାନ୍ତ କଲେ ।

ଏ ଘଟଣାର ଅଳ୍ପ କେତେ ଦିନ ପରେ ରାଜପୁତ୍ର ମୃଗୟା ନିମନ୍ତେ ବନବିହାର କରିବାକୁ ଯାଇ ଏକ ଦୁର୍ଘଟଣାର ସମ୍ମୁଖୀନ ହେଲେ । ସେ ଏକ ମିତ୍ରଦ୍ରୋହ କାର୍ଯ୍ୟକରି ମାନସିକ ରୋଗରେ ପୀଡ଼ିତ ହେଲେ । ତଦ୍ୱାରା ସେ ଦିନରାତି ସଶେମିରା ଏପରି ଚିତ୍କାର କରିବାକୁ ଲାଗିଲେ । ଏହି ନୂତନ ବିଚିତ୍ର ରୋଗକୁ କେଉଁ କବିରାଜ ଭଲ କରିପାରିଲେ ନାହିଁ ।ଏ ରୋଗର କାରଣ ମଧ୍ୟ ସେମାନେ ଚିହ୍ନି ପାରିଲେ ନାହିଁ । ରାଜପୁତ୍ର ଅନ୍ନ ଜଳ ତ୍ୟାଗ କରି ଦିନକୁ ଦିନ କ୍ଷୀଣ ହେବାକୁ ଲଗିଲେ । ସେତିକବେଳେ କାଳିଦାସଙ୍କ ପରାମର୍ଶରେ ଭବଭୂତି ନିଜର ପୁତ୍ରବଧୂ ବୋଲି ପରିଚୟ ଦେଇ ଶିବିକାରେ ବସାଇ କାଳିଦାସଙ୍କୁ ରାଜକୁମାରଙ୍କଚିକିତ୍ସା ନିମନ୍ତେ ରାଜାଙ୍କ ଆଦେସ ନେଇ ରାଜବାଟିକୁ ଆଣିଲେ ।କାଳିଦାସ ନାରୀ ବେଶରେ ଶିବିକା ଭିତରେ ରହି ଚାରିଗୋଟି ଶ୍ଳୋକ ପାଠ କଲେ । ତାହା ବଣରେ ଘଟିଥିବା ଘଟଣାର ବର୍ଣ୍ଣନା ମାତ୍ର ତାହ ଶୁଣି ରାଜକୁମାର ଆରୋଗ୍ୟ ହୋଇଗଲେ । ବିଚିତ୍ର ଭାବରେ ପୁତ୍ରର ରୋଗ ହରଣ ହେବା ଦେଖି ରାଜା ବିକ୍ରମାଦିତ୍ୟ ଅତ୍ୟନ୍ତ ପ୍ରସନ୍ନ ହେଲେ ଓ ପଚାରିଲେ—

ଗୃହେ ବସନ୍ତି କୌମାସ୍ତ୍ରୀ ଅଟବୀଂ ନୈବ ଗଚ୍ଛନ୍ତି
ଋକ୍ଷ ବ୍ୟାଘ୍ର ମନୁଷ୍ୟାଣାଂ କଥାଂ ଜାନାସି ଭାଷିତଂ ॥

ଅର୍ଥାତ୍ ଯେଉଁ କୁମାରୀ ଅନ୍ତଃପୁରରେ ବାସ କରେ ସେ ବନରେ ଘଟିଥିବା ବ୍ୟାଘ୍ର ଭାଲୁକ ଓ ମନୁଷ୍ୟ ଭିତରର ରହସ୍ୟ କଥା କିପରି ଜାଣିଲେ ।

ସେତେବେଳେ କାଳିଦାସଙ୍କୁ କହିବା ପାଇଁ ସୁବିଧା ଓ ସୁଯୋଗ ମିଳିଗଲା । ସେ କହିଲେ—

ଦେବଗୁରୁ ପ୍ରସାଦେନ ଜିହ୍ୱାଗ୍ରେମେ ସରସ୍ୱତୀ,
ତେନାହଂ ନୃପ ଜାନାମି ଭାନୁମତ୍ୟା ତିଳଂ ଯଥା ॥

ଏହାର ଅର୍ଥ ହେଲା—ହେ ରାଜା ! ଦେବତା ଓ ଗୁରୁଙ୍କ କୃପାରୁ ମୋର ଜିହ୍ୱାଗ୍ରରେ ସରସ୍ୱତୀ ବିଦ୍ୟମାନ । ମୁଁ ତାଙ୍କର କୃପାରୁ ସକଳ ବିଷୟ ଜାଣିପାରୁଛି । ପୂର୍ବରେ ନ ଦେଖି ସୁଦ୍ଧା ମୁଁ ଭାନୁମତୀଙ୍କ ତିଳଚିହ୍ନ କଥା ଯେପରି କହିଥିଲି, ଏଷଣି ବନକୁ ନ ଯାଇ ସୁଦ୍ଧା ସେସେମିରା ଘଟଣା କହିପାରିଲି । ଏଥିରେ ଆଶ୍ଚର୍ଯ୍ୟର ବିଷୟ କଣ ଅଛି ।

ରାଜା ଜାଣିଲେ ଏ ନାରୀ ନହେ ତାଙ୍କର ପ୍ରିୟ କବି କାଳିଦାସ ଅଟନ୍ତି । ସେ ଅନୁତାପ କଲେ । କାଳିଦାସଙ୍କୁ ପୁଣି ପଟ୍ଟବସ୍ତ୍ର କୁଣ୍ଡଳ ଧନରତ୍ନ ଦେଇ ସତ୍କାର କଲେ ଓ ନିଜର ପୁତ୍ରର ରୋଗ ଆରୋଗ୍ୟ ହୋଇଥିବା ଦେଖି ପରମ ସନ୍ତୋଷ ଲାଭ କଲେ ।

## ଦେଶ ପର୍ଯ୍ୟଟନ—

ଏହି ଘଟଣା ପରେ କାଳିଦାସଙ୍କୁ ବିକ୍ରମାଦିତ୍ୟ ଅଧିକ ଆଦର କଲେ ସୁଦ୍ଧା କାଳିଦାସ ଅଧିକ କାଳ ବିକ୍ରମାଦିତ୍ୟଙ୍କ ସଭାରେ ରହିବା ପାଇଁ ଇଚ୍ଛା ପ୍ରକାଶ କଲେ ନାହିଁ । ସେ ଭାରତର ବହୁ ରାଜଭବନ ଭ୍ରମଣ କରି ନିଜର ଜ୍ଞାନ ବିକାଶ କରିବା ଓ ଶାସ୍ତ୍ର ଆଲୋଚନା କରିବା ପାଇଁ ମନ ବଳାଇଥିଲେ । ରାଜା ବିକ୍ରମାଦିତ୍ୟ କାଳିଦାସଙ୍କୁ ଏତେ ଭଲ ପାଉଥିଲେ ଯେ ତାଙ୍କୁ ପାଖରୁ ଅନ୍ତର କରିବାକୁ ମନ ବଳାଉ ନଥିଲେ । କିନ୍ତୁ ସେ ବହୁ ଅନୁନୟ ବିନୟ କରି ଅଳ୍ପ କେତୋଟି ଦିନ ସକାଶେ ଦେଶ ପର୍ଯ୍ୟଟନରେ ଯାତ୍ରା କରିବାକୁ ସ୍ଥିର କଲେ । ପଥଖର୍ଚ୍ଚ ନିମନ୍ତେ ରାଜା ବହୁ ଧନ ରତ୍ନ ଦେଇ ସମ୍ମାନରେ ତାଙ୍କୁ ବିଦାୟ ଦେଲେ ଓ ପୁନଶ୍ଚ ରାଜ୍ୟକୁ ଫେରି ଆସିବା ନିମନ୍ତେ ଅନୁରୋଧ ଜଣାଇଲେ ।

ସବୁ ରାଜ ଦରବାରରେ ସେତେବେଳକୁ ସଂସ୍କୃତ ସାହିତ୍ୟର ଚର୍ଚ୍ଚା ହେଉଥାଏ । ପ୍ରତ୍ୟେକ ରାଜ୍ୟର ରାଜାଙ୍କ ପାଖରେ ଅନେକ ପଣ୍ଡିତ ନିତ୍ୟ ଶାସ୍ତ୍ର ଚର୍ଚ୍ଚା କରୁଥିଲେ । ରାଜାମାନେ ନୂତନ ଗ୍ରନ୍ଥ ବା ନୂତନ କବିତା ରଚନା କରୁଥିବା ବ୍ୟକ୍ତିଙ୍କୁ ବିଶେଷ ପୁରସ୍କାରମାନ ଦେଉଥିଲେ । ଏହା ଦ୍ୱାରା ସର୍ବସାଧାରଣ ମଧ୍ୟ ନୂତନ ଶ୍ଳୋକ ରଚନା କରିବା ପାଇଁ ଯତ୍ନବାନ୍ ହେଉଥିଲେ । ଶସ୍ତ୍ରର ଚର୍ଚ୍ଚା ନ ହୋଇ ରାଜାମାନେ ଶାସ୍ତ୍ରର ଚର୍ଚ୍ଚା କରୁଥିବାରୁ ପ୍ରଜାମାନଙ୍କ ମନରେ ଶାନ୍ତି ବିରାଜମାନ ହେଉଥିଲା । ଗୋଟିଏ ରାଜ୍ୟର ରାଜା ସଭାର ପଣ୍ଡିତ ଅନ୍ୟ ରାଜାଙ୍କ ସଭା ପଣ୍ଡିତମାନଙ୍କୁ ବାଦତର୍କ ଓ ନୂତନ ଶ୍ଳୋକ ଚର୍ଚ୍ଚା କରି ପରାଜିତ କରୁଥିଲେ ଓ ତତ୍ ସଙ୍ଗେ ସଙ୍ଗେ ବହୁ ଧନ ପୁରସ୍କାର ରୂପେ

ଯାଇ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରୁଥିଲେ । ଏହିଭଳି ଏକ ସୁବର୍ଣ୍ଣ ଯୁଗରେ କାଳିଦାସଙ୍କର ଆବିର୍ଭାବ ।

ସେ ଯେପରେ ସରସ୍ୱତୀଙ୍କର ବରପୁତ୍ର ଥିଲେ । ସେ ଗୁହିଁବାକ୍ଷଣି ନୂତନ ନୂତନ ଶ୍ଳୋକ ମୁଖରୁ ନିର୍ଗତ ହୋଇ ଯାଉଥାଏ । କେହି ପଦଟିଏ କହିବା କ୍ଷଣି କବିତାର ପାଦ ପୂରଣ କରୁଥିଲେ ଅତି ଚମତ୍କାର ଭାବରେ । ସେ ତାଙ୍କ ଜୀବନରେ ବହୁ ବାକ୍ୟର ପାଦ ପୂରଣ କରି ଗୌରବ ଲାଭ କରିଛନ୍ତି ।

ସେ ଚାଲି ଚାଲି ବହୁ ଗ୍ରାମ ଅତିକ୍ରମ କରି ଆସୁଛନ୍ତି ଭୋଜ ରାଜାଙ୍କ ନଗରକୁ । ଯେଉଁ ଗ୍ରାମରେ ରାତ୍ରି ଯାପନ କରନ୍ତି, ସେହି ଗ୍ରାମରେ ହୁଏ ସାହିତ୍ୟ ଚର୍ଚ୍ଚା । କବିଙ୍କର ଗଳା ଅତି ମଧୁର ଥିଲା । ସେ ନିଜ ରଚିତ ଗ୍ରନ୍ଥଗୁଡ଼ିକୁ ସର୍ବସାଧାରଣଙ୍କୁ ଶୁଣାଉଥାନ୍ତି ଓ ତଦ୍ୱାରା ମୁଗ୍ଧ କରନ୍ତି । କାଳିଦାସ ଭୋଜ ରାଜାଙ୍କ ନଗରରେ ପ୍ରବେଶ କଲେ । ଦେଖିଲେ ଦୁଇ ଜଣ ବିପ୍ର ଅତି ବିମର୍ଷ ଦେଖା ଯାଉଥାନ୍ତି । ସେମାନେ ନିତାନ୍ତ ଗରିବ । ଧନ ପାଇବା ପାଇଁ ଏକ ଉପାୟ ଚିନ୍ତା କରୁଛନ୍ତି । ସେମାନେ ଏକ ଶ୍ଳୋକ ରଚନା କରି ରାଜାଙ୍କ ପାଖକୁ ନେବେ । ଫଳରେ ନୂତନ ଶ୍ଳୋକ ପାଇ ରାଜାଙ୍କ ପାଖରୁ କିଛି ଧନ ପାଇବେ । ହେଲେ ଶ୍ଳୋକ କଣ ସମସ୍ତଙ୍କ ହାତରେ ହୁଏ । ଦୁଇଜଣ ଦୁଇଟି ବାକ୍ୟ ମୋଡ଼ା ମୋଡ଼ି କରି ହତାଶ ହେଲେଣି । କାଳିଦାସ ସେମାନଙ୍କ ପାଖରେ ବସି ଏ ରହସ୍ୟ ଦେଖୁଛନ୍ତି । ଜଣେ କହୁଛି, ମୋତେ ବେଦରୁ ଧାଡ଼ିଏ ମାତ୍ର ଜଣା "ଅଣୋରଣୀୟାନ୍ ମହତୋ ମହୀୟାଂ" ଯେବା କଲେ ବ୍ରହ୍ମ ଅଣୁଠାରୁ ମଧ୍ୟ ଆହୁରି କ୍ଷୁଦ୍ର ଓ ବୃହତ ଠାରୁ ମଧ୍ୟ ଆହୁରି ବୃହତ୍ତ ।" ଦ୍ୱିତୀୟ ଜଣଙ୍କ କହିଲେ ମୋତେ ପଇତା ମନ୍ତ୍ରରୁ ଧାଡ଼ିଏ ଜଣା— "ଯଜ୍ଞପବୀତଂ ପରମ ପବିତ୍ର ।"

କାଳିଦାସ ଏ ଦୁଇଟି ମୂର୍ଖଙ୍କୁ ଦେଖି ହସିଲେ । ପାଖକୁ ଡ଼ାକି କହିଲେ, ଦେଖ ମୁଁ ଶ୍ଲୋକଟି କହିଦେବି । ତୁମେ ରାଜାଙ୍କୁ ଦେଖାଅ । ନିଶ୍ଚୟ ପୁରସ୍କାର ପାଇବ ।

ଏହା ଶୁଣି ସେ ଦୁହିଁଙ୍କର ମନ ଭାରି ଉଷତ ଦେଖାଗଲା । କାଳିଦାସ ଶ୍ଲୋକଟି କହି ଅର୍ଥ ବୁଝାଇଦେଲେ ।

ଅଣୋ ରଣିୟାନ୍ ମହତୋ ମହତାଂ
ମଧ୍ୟ ନିତାମ୍ୱସ୍ତ ମଦାଙ୍ଗନାସ୍ୱାଂ
ତଦଙ୍ଗ ଦରିଦ୍ର ରସେନ ଲିପ୍ତଂ
ଯକ୍ଷପର୍ବତଂ ପରମ ପର୍ବତଂ ॥

ଏହାର ଅର୍ଥ ହେଲା । ଯେଉଁ ନାରୀର କଟି ଭାଗ କ୍ଷୁଦ୍ରରୁ କ୍ଷୁଦ୍ରତର, ନିତମ୍ବ ଓ ବକ୍ଷଦେଶ ବୃହତରୁ ବୃହତର, ସେ ନାରୀର ଅଙ୍ଗରେ ଲାଗିଥିବା ହଳଦୀରେ ଲିପ୍ତ ହେବା ପର୍ବତକୁ ପରମ ବା ଶ୍ରେଷ୍ଠ ପର୍ବତ କୁହାଯିବା ଉଚିତ ।

ପଣ୍ଡିତ ଦୁହିଁଙ୍କ ବାକ୍ୟ ଦୁଇଟିକୁ ଯୋଗ କରି କାଳିଦାସ ଚମତ୍କାର ଶ୍ଲୋକଟିଏ କରିଦେବା ଯୋଗୁଁ ପଣ୍ଡିତ ଦୁହେଁ କବିଙ୍କୁ ନିଜ ଘରେ ରଖାଇ ରାଜସଭାକୁ ବାହାରିଲେ । ରାଜା ଭୋଜଙ୍କ ନିକଟରେ ତାହା ଗାନ କଲେ । ରାଜସଭାର ପଣ୍ଡିତମାନେ ଏତେ ସରସ ରସଯୁକ୍ତ ଶୃଙ୍ଗାର ଭାବଉଦ୍ରେକ ଶ୍ଲୋକ କାହା ମୁହଁରୁ ଶୁଣି ନଥିଲେ । ରାଜା ଭୋଜ ଅତ୍ୟନ୍ତ ପ୍ରୀତ ହୋଇ ପଣ୍ଡିତମାନଙ୍କୁ ବହୁ ଧନ ରତ୍ନ ଦାନ କଲେ ଓ ଆଉ କିଛି ଶ୍ଲୋକ ଏହି ରାଜସଭାରେ ଗାଇ ଶୁଣାଇବା ପାଇଁ ପ୍ରାର୍ଥନା କଲେ । ପଣ୍ଡିତ ଦୁହେଁ ମହା ହଇରାଣରେ ପଡ଼ିଲେ । ସେମାନେ ବାଧ୍ୟ ହୋଇ କବି କାଳିଦାସଙ୍କ ପରିଚୟ ଦେଲେ ।

ରାଜା କାଳିଦାସଙ୍କ ରଚିତ ଗ୍ରନ୍ଥ ପୂର୍ବରୁ ଶୁଣିଥିଲେ । ଏଣୁ କାଳିଦାସ ତାଙ୍କ ରାଜ୍ୟକୁ ଆସିଛନ୍ତି ଶୁଣି ଅତି ଆନନ୍ଦ ହେଲେ ଓ ସବାର ପଠାଇ ରାଜସଭାକୁ ସଗୌରବେ ମହାକବିଙ୍କୁ ଆଣିବାର ବ୍ୟବସ୍ଥା କଲେ ।

## ଭୋଜରାଜଙ୍କ ସଭାରେ କବି କାଳିଦାସ—

ଅତି ଅଦ୍‌ଭୂତ ଭାବେ କାଳିଦାସ ଭୋଜଙ୍କ ଧାରାନଗରୀ ରାଜସଭାରେ ଅତି ଗୌରବ ସତ୍କାରେ ଉପସ୍ଥିତ ହେଲେ । କାଳିଦାସଙ୍କୁ ଦେଖି ପଣ୍ଡିତମାନଙ୍କ ମୁଖ ମଳିନ ପଡ଼ିଥିଲା । ଯିଏ ଯେଉଁ ବାକ୍ୟ କହନ୍ତି କାଳିଦାସ ସବୁ ଗୁଡ଼ିକର ପଦ ପୂରଣ କରି ଅତି ଚମତ୍‌କାର ଅର୍ଥ କରି ଦେଉଥିଲେ । ତାଙ୍କର ପ୍ରତ୍ୟେକ ଶ୍ଳୋକ ଅଳଙ୍କାର ଯୁକ୍ତ ହୋଇଥାଏ । ଏହା ତାଙ୍କ ରଚନାର ଏକ ବୈଶିଷ୍ଟ୍ୟ ଥିଲା । ଏଣୁ କଥାରେ କହନ୍ତି, "ଉପମା କାଳିଦାସସ୍ୟ" ।

କେହି ତାଙ୍କୁ ଯଦି କୌତୁକରେ କିଛି ପ୍ରଶ୍ନ କରନ୍ତି, ସେ ସଙ୍ଗେ ସଙ୍ଗେ ଶ୍ଳୋକରେ ତାର ଉତ୍ତର ଦେଉଥିଲେ ।

ଭୋଜରାଜାଙ୍କ ସଭାରେ ଥରେ ଜଣେ ପ୍ରଶ୍ନ କଲେ—

ଠଠଂ କଂ ଠଠଂ କଂ ଠଠଂ କଂ ଠଠଂ କଂ

କାଳିଦାସ ତାହାର ଉତ୍ତର ଦେଲେ—

ଧନଂ ପର୍ବତାକାରଂ ବିଚକ୍ଷିନ ରୂପଂ
ବପୁ କର୍ମଦକ୍ଷଂ କୁଶାଗ୍ରୀଣ ବୁଦ୍ଧିଃ
ନଦାନଂ ନ ପଠୋ ନ ଧର୍ମୋ ନ କୀର୍ତ୍ତି ମୃତ୍ୟୁଃ
ଠଠଂ କଂ ଠଠଂ କଂ ଠଠଂ କଂ ଠଠଂ କଂ

ଥରେ ରାଜା ପଚାରିଲେ—

"ଠଂଠଂ ଠଠଂ ଠଂ ଠଠଠଂ ଠଠଂ ଠଃ" ର ଅର୍ଥ କଣ ?

କାଳିଦାସ ଏକ ଶ୍ଳୋକରେ ତାହାର ଅର୍ଥ ବୁଝାଇ ଦେଲେ —

"ରାଜାଭିଷେକେ ମଦ ବିହ୍ୱଳାୟାଃ
କସ୍ତ ଚ୍ୟୁତୋ ହେମ ଘଟ ସ୍ତରୁଣ୍ୟାଃ
ସୋପାନ ମାରୁହ୍ୟ କରୋତି ଶବ୍ଦଂ
ଠଂଠଂ ଠଠଂ ଠଂ ଠଠଠଂ ଠଠଂ ଠଃ"

ଏହି ଘଟଣାର ବର୍ଣ୍ଣନା ନ ଦେଖି ସୁଦ୍ଧା କବି କାଳିଦାସ କପଣ କଲେ, ଏହା ରାଜାଙ୍କୁ ବଡ଼ ଆଶ୍ଚର୍ଯ୍ୟ କରାଇ ଦେଇଥିଲା । ସେ ଜାଣିଲେ ଯେ ସରସ୍ୱତୀଙ୍କ କୃପା ହେଲେ କଣ ନ ହୋଇପାରେ ।

ବାସ୍ତବିକ କବିଙ୍କୁ ସରସ୍ୱତୀଙ୍କ କୃପା ଥିଲା ଯେ, ସେ ବାକ୍ୟଟିଏ ଶୁଣିବା ମାତ୍ରେ ତାର ପାଦ ପୂରଣ କରିପାରିବେ । ଗୋଟିଏ ଶ୍ଳୋକ ସେ ପାଇଗଲେ ତାର ତଳକୁ ତଳକୁ ଶ୍ଳୋକଗୁଡ଼ିକ ସ୍ୱତଃ ତାଙ୍କ ମୁଖରୁ ନିର୍ଗତ ହୋଇ ଯାଉଥିଲା ।

## ମହାନାଟକର ଉଦ୍ଧାର—

ଥରେ ଜଣେ କେଉଟ ସମୁଦ୍ରରୁ ମାଛ ଧରିବା ପାଇଁ ଡଙ୍ଗାରେ ଯାଇ ଜାଲ ପକାଇଲା । ଦେଖିଲା ତାର ଜାଲ ସହଜରେ ଟାଣି ହେଉ ନାହିଁ । ବଡ଼ ମାଛଟିଏ ପଡ଼ିଛି ଜାଣି ତାର ମନ ଅତ୍ୟନ୍ତ ପ୍ରଫୁଲ୍ଲ ହେଲା । ତାର ସାଙ୍ଗମାନଙ୍କୁ କହିଲା ଯେ ତାର ଜାଲରେ ଆଜି ଗୋଟାଏ କିଛି ପଦାର୍ଥ ନିଶ୍ଚୟ ପଡ଼ିଛି । ସେ ଭାଇମାନଙ୍କୁ ସାଥିରେ ଧରି ଜାଲ ଟାଣିଲା ।

କିନ୍ତୁ ବଡ଼ ଦୁଃଖର ବିଷୟ ତାହା ମାଛ ନ ହୋଇ ଗୋଟିଏ ବଡ଼ ପଥର ମାତ୍ର । ସେମାନଙ୍କର ଆଶା ବ୍ୟର୍ଥ ହୋଇଗଲା । ଜାଲ ଭିତରୁ ପଥର ଖଣ୍ଡିକ କାଢ଼ି ଫିଙ୍ଗିଦେଲେ । ଜଣେ ଦେଖିଲେ ସେ ପଥର ଦେହରେ କଣ ଗୁଡ଼ାଏ ଲେଖା ଯାଇଛି । ତାକୁ ଧୂଆଧୋଇ କରି ଦେଖିଲେ । ତାହା ଥିଲା ଏକ ଶ୍ଳୋକ । ରାଜା ନୂଆଁ ଶ୍ଳୋକକୁ ଉପହାର ଦିଅନ୍ତି । ସେମାନେ ଧନ ପାଇବା ଆଶାରେ ସେହି ପଥର ଖଣ୍ଡିକୁ ବୋହି ବୋହି ଭୋଜ ରାଜାଙ୍କ ସଭାକୁ ନେଇଗଲେ ।

ରାଜା କାଳିଦାସଙ୍କୁ ଏହାର ରହସ୍ୟ ପଚାରିଲେ । କାଳିଦାସ ସେହି ଶ୍ଳୋକଟିକୁ ପାଠ କଲେ ।

ତାପରେ ଗୋଟି ଗୋଟି କରି ଅନେକ ଶ୍ଳୋକ୍ ଗାଇ ଚାଲିଲେ । ସଭାର ଅନ୍ୟାନ୍ୟ ପଣ୍ଡିତମାନେ ଏ ଚମତ୍କାର ଶ୍ଳୋକଗୁଡ଼ିକ ଶୁଣି ମୁଗ୍‌ଧ ହୋଇଗଲେ । ସେଗୁଡ଼ିକ ହେଲା ହନୁମାନ କୃତ ମହାନାଟକର ଶ୍ଳୋକ ।

କବି ବାଲ୍ମୀକି ରାମାୟଣ ରଚନା କରିସାରିବା ପରେ ସେହି ଗ୍ରନ୍ଥଟିକୁ ସଂଶୋଧନ କରିବା ନିମନ୍ତେ, ରାମଙ୍କ ବିଷୟରେ ଉତ୍ତମ ରୂପେ ଜାଣିଥିବା ପଣ୍ଡିତ ହନୁମାନଙ୍କ ନିକଟକୁ ଆଣିଥିଲେ । ସେତେ-ବେଳକୁ ହନୁମାନ ମଧ୍ୟ ଏକ ପର୍ବତର ପଥର ଦେହରେ ଖୋଳି ଖୋଳି ଗୋଟିଏ ନାଟକ ରଚନା କରିଥିଲେ । ହନୁମାନଙ୍କ ନାଟକ ପର୍ବତ ଦେହରେ ଦେଖିବା ମାତ୍ରେ ବାଲ୍ମୀକିଙ୍କ ମୁଖ ଶୁଖିଗଲା । ନିଜେ ଦେଖିଥିବା ହନୁମାନଙ୍କ ରଚନା କଳ୍ପନାରେ ରଚନା କଳ୍ପନାରେ ଦେଖିଥିବା ବାଲ୍ମୀକି ରଚନାଠାରୁ ନିଶ୍ଚୟ ସରସ ହୋଇଥିବ ଜାଣି ବାଲ୍ମୀକି କିଛି କହିପାରିଲେ ନାହିଁ । ହନୁମାନ ବାଲ୍ମୀକିଙ୍କ ହୃଦୟର

ଦୁଃଖ ଦେଖି ପାରିଲେ । ତେଣୁ ସେ ବାଲ୍ମୀକୀଙ୍କୁ କହିଲେ, ରାମଙ୍କ ବିଷୟ ମୁଁ ଆଁ ଖି ତୁମ ଗ୍ରନ୍ଥର ଅମର୍ଯ୍ୟାଦା କରିବି ନାହିଁ । ତୁମର ରାମାୟଣ ଜଗତରେ ବଞ୍ଚି ରହୁ । ଏହା କହି ସେ ଲେଖିଥିବା ପଥର-ଗୁଡ଼ିକୁ ସମୁଦ୍ର ଭିତରକୁ ଫୋପାଡ଼ ଦେଇଥିଲେ । ଆଜି ସେଥିରୁ ଗୋଟିଏ ମାତ୍ର ମିଳିଛି । ଯାହେତୁ ଏହି ଶ୍ଳୋକର ପର ଶ୍ଳୋକଗୁଡ଼ିକ ମୁଁ ମାଁ ସରସ୍ୱତୀଙ୍କ କୃପାରୁ ଗାଇ ପାରିବି । ଏହା କହି ସେ ମହାନାଟକ ହନୁମାନଙ୍କ ବିରଚିତର ଲଙ୍କା କାଣ୍ଡଠାରୁ ଗାନ କରି ଉଦ୍ଧାର କଲେ ।

ଏଥିରେ କବିଙ୍କର ମହତ୍ତ୍ୱ ଆହୁରି ଅଧିକ ବଢ଼ିଗଲା । ରାଜା କବିଙ୍କୁ ବହୁ ପୁରସ୍କାର ପ୍ରଦାନ କଲେ । ପଣ୍ଡିତମାନେ ଏହା ସହ୍ୟ କରିପାରିଲେ ନାହିଁ । ସେମାନେ ଖୋଜି ଖୋଜି ଏପରି ତିନିଜଣ ପଣ୍ଡିତଙ୍କୁ ଆଣିଲେ ଯେଉଁମାନଙ୍କ ଭିତରୁ ଜଣେ ଥରେ, ଜଣେ ଦି ଥର ଓ ଅନ୍ୟ ଜଣଙ୍କ ତିନି ଧର ମାତ୍ର ଶୁଣି ମନେ ରଖି ପାରୁଥିଲେ ।

ପ୍ରତିଦିନ ରାଜ ସଭାରେ ଏକ ନୂତନ ଶ୍ଳୋକ ଗାନ କରି କାଳିଦାସ ପୁରସ୍କାର ନେଇ ବସାକୁ ଫେରୁଥିଲେ । ଏହି ତିନିଜଣ ପଣ୍ଡିତ କାଳିଦାସ ପାଠ କରିବା ନୂତନ ଶ୍ଳୋକକୁ ଆମେ ଜାଣିଛୁ କହି ପୁରୁଣା ଶ୍ଳୋକ ବୋଲି ଘୋଷଣା କଲେ । କେବଳ ସେତିକି ନୁହେଁ, ସେମାନଙ୍କ ମଧ୍ୟରୁ ପ୍ରଥମେ ଥରେ ମନେ ରଖିବା ପଣ୍ଡିତ ଗାଆନ୍ତି, ତାପରେ ଦିଥର ଶୁଣି ମନେ ରଖିବା ପଣ୍ଡିତ ଗାଆନ୍ତି ଓ ଶେଷଥର ତିନିଥର ଶୁଣି ମନ ରଖି । ପଣ୍ଡିତେ ଗାଇ ଦେଇ କବିଙ୍କ ନୂତନ ଶ୍ଳୋକକୁ ଏକ ପୁରାତନ ଶ୍ଳୋକ ବୋଲି ଘୋଷଣା କରନ୍ତି । ସେମାନଙ୍କ ଯୋଗୁଁ କାଳିଦାସ ରାଜଦ୍ୱାରରୁ ଅର୍ଥ ନ ପାଇ ହତୋତ୍ସାହ ହେଲେ । କାଳିଦାସ ସେମାନଙ୍କ ରହସ୍ୟ ବୁଝିବା ପରେ ଏକ ଚମତ୍କାର

ଶ୍ଳୋକ ଗାନ କରିବା ଫଳରେ ଏଥର ପଣ୍ଡିତମାନେ ହଟହଟାରେ ପଡ଼ିଲେ । ସେହି ଶ୍ଳୋକଟି ହେଲା—

ସ୍ୱସ୍ତି ଶ୍ରୀ ଭୋଜରାଜ ! ତ୍ରିଭୁବନ ବିଜୟୀ ଧାର୍ମିକ ସତ୍ୟବାଦୀ
ପିତା ତତ୍ତ୍ୱମେ ଗୃହୀତା ନବ ନବତିଯୁତାଃରତ୍ନ କୋଟିର୍ମଦୀୟା
ତାଂତ୍ୱଂ ମେଦ୍ଦି ଦେହିନଃ ସକଳ ବୁଧଜନୈ ର୍ଜ୍ଞାୟତେ ସତ୍ୟମେତତ୍
ନୋବା ଜାନାନ୍ତି କଶ୍ଚିତ୍ ନବକୃତ ମିତି
ଚେତ୍ ଦେହି ଲକ୍ଷାତ୍ ତତୋମେ

ଏହାର ସାରକଥା ହେଲା—ହେ ଭୋଜରାଜା ଆପଣଙ୍କର ମଙ୍ଗଳ ହେଉ । ଆପଣ ଜଣେ ତ୍ରିଭୁବନ ବିଜୟୀ ଧାର୍ମିକ ଓ ସତ୍ୟବାଦୀ ରାଜା ଅଟନ୍ତି । ଆପଣଙ୍କ ପିତା ମୋଠାରୁ ଏକ କୋଟି ଅନେଶ୍ୱତ ଗୋଟି ସ୍ୱର୍ଣ୍ଣ ମୁଦ୍ରା ଗ୍ରହଣ କରିଅଛନ୍ତି । ଏହି ପଣ୍ଡିତମାନେ ଏଇ କଥା ବୋଧହୁଏ ଜାଣି ଅଛନ୍ତି । ଅତଏବ ଏହା ମୋତେ ପ୍ରଦାନ କରନ୍ତୁ । ଯଦି ଏହି ପଣ୍ଡିତମାନେ ଏଇ କଥା ଜାଣନ୍ତି ନାହିଁ, ତେବେ ଏହା ମୋର ଏକ ନୂତନ ଶ୍ଳୋକ ଅଟେ । ଅତଏବ ମୁଁ ଆପଣଙ୍କଠାରୁ ଏକ ଲକ୍ଷ ସ୍ୱର୍ଣ୍ଣମୁଦ୍ରା ପାଇବାକୁ ହକଦାର ଅଟେ ।

ଏହି ଶ୍ଳୋକଟି ପାଠ କରାଗଲା ପରେ ଭୋଜରାଜା ପଣ୍ଡିତମାନଙ୍କ ମୁଖକୁ ଚାହିଁଲେ । ପଣ୍ଡିତମାନେ ଏପରି ଅଡୁଆରେ ପଡ଼ିଲେ ଯେ ଏ ଶ୍ଳୋକ ଜଣା ବୋଲି କହିଲେ କାଳିଦାସ ରାଜାଙ୍କଠାରୁ କୋଟିଏ ସୁବର୍ଣ୍ଣ ମୁଦ୍ରା ପାଇବେ । ଶ୍ଳୋକଟା ଜାଣନ୍ତି ନାହିଁ କହିଲେ ଏହା ଏକ ନୂତନ ଶ୍ଳୋକ ଭାବେ ଲକ୍ଷେ ମୁଦ୍ରା ପାଇବେ ଏଣୁ ନୀରବ ହୋଇ ଠିଆ ହେଲେ । ରଜା ପଣ୍ଡିତମାନଙ୍କର ଏ କୌତୁକ ଖେଳ ଦେଖୁଥିଲେ । କାଳିଦାସଙ୍କର ଚତୁରତା ବୁଝିପାରିଲେ । ସେ ହସି ହସି

କାଳିଦାସଙ୍କୁ କୋଳ ଗ୍ରତ କଲେ ଓ ଲକ୍ଷ୍ୟ ମୁଦ୍ରା ଉପହାର ଦେଇ ସେ ଦିନର ସଭା ଭଙ୍ଗ କଲେ ।

**ଦିନକର ଘଟଣା --**

ଦିନେ ରାଜା ବିକ୍ରମାଦିତ୍ୟ ପଣ୍ଡିତ ମାନଙ୍କର ବୁଦ୍ଧି ପରୀକ୍ଷା ନିମନ୍ତେ ଇଚ୍ଛା କଲେ । ସେ ଜଣେ ପଣ୍ଡିତଙ୍କୁ ପ୍ରଶ୍ନ କରିବା ପାଇଁ କହନ୍ତି ଓ ଅନ୍ୟ ଯେଉଁ ପଣ୍ଡିତ ସେହି ପ୍ରଶ୍ନର ଉତ୍ତର ଦେଇ ପାରୁଥିଲେ ତାହାଙ୍କୁ ଉପଯୁକ୍ତ ପୁରସ୍କାର ଦେଉଥିଲେ । ରାଜା ଏପରି ପଣ୍ଡିତ ମାନଙ୍କ ଉତ୍ସାହ ବଢ଼ାଉ ଥିଲେ । ସେ ଦିନ ପଣ୍ଡିତମାନେ ଜଣେ ଜ ଣ ମୋଟେ ପ୍ରଶ୍ନ କରିଥିଲେ । ସେହି ପ୍ରଶ୍ନର ସଠିକ ଉତ୍ତର ଏକମାତ୍ର କାଳିଦାସ ଦେଇ ରାଜାଙ୍କ ଠାରୁ ବହୁ ଥର ପୁରସ୍କାର ପାଇଥିଲେ । ଅନ୍ୟ ପଣ୍ଡିତ ମାନଙ୍କ ଉତ୍ତର ଠାରୁ କାଳିଦାସଙ୍କ ଉତ୍ତର ଅଧିକ ଯୁକ୍ତି ଯୁକ୍ତ ଓ ଚମତ୍କାର ଥିଲା ।

ଅନ୍ୟ ପଣ୍ଡିତ ମାନଙ୍କୁ ଉତ୍ସାହ ଦେବାପାଇଁ ରାଜା କାଳିଦାସଙ୍କୁ ପ୍ରଶ୍ନ କରିବାକୁ କହିଲେ । କାଳିଦାସଙ୍କ ପ୍ରଶ୍ନର ଉତ୍ତର ପଣ୍ଡିତମାନେ ଦେଇ ନିଶ୍ଚୟ ପୁରସ୍କାର ପାଇବେ । ଫଳରେ ପଣ୍ଡିତ ମାନଙ୍କର କାଳିଦାସଙ୍କ ଉପରେ ଈର୍ଷା ରହିବ ନାହିଁ । ଏହା ଥିଲା ରାଜାଙ୍କ ବିଚାର କିନ୍ତୁ ତାହା ସେପରି ନହୋଇ ଭିନ୍ନ ପ୍ରକାର ହେଲା । କାଳିଦାସ ପ୍ରଶ୍ନ ପତ୍ରର ମଧ୍ୟ ଉତ୍ତର ସେ ନିଜେ ଦେଇ ଦେଲେ ଏକ ବିଚିତ୍ର ଭଙ୍ଗିରେ ତାଙ୍କର ପ୍ରଶ୍ନ ଗୁଡ଼ିକହିଁ ତା'ର ଉତ୍ତର ହୋଇଥିଲା । ପଣ୍ଡିତମାନଙ୍କୁ ଅବସର କାହିଁ ଯେ, ସେ ପ୍ରଶ୍ନର ଉତ୍ତର ଦେବେ । ସେ ଗୁଡ଼ିକ ହେଲା—

ପ୍ରଶ୍ନ— କଂ ବଳବନ୍ତଂ ଶୀତଂ ନ ବାଧତେ ?
ଉତ୍ତର— କଂବଳବନ୍ତଂ ଶୀତଂ ନ ବାଧତେ ?
ପ୍ରଶ୍ନ— କା ଶୀତଳ ବାହିନୀ ଗଙ୍ଗା
ଉତ୍ତର— କାଶୀତଳ ବାହିନୀ ଗଙ୍ଗା ?

ଏହାର ଅର୍ଥ ହେଲା—
ପ୍ରଶ୍ନ— କେଉଁ ବଳବନ୍ତ ବ୍ୟକ୍ତିକୁ ଶୀତ ବାଧେ ନାହିଁ ।
ଉତ୍ତର— ଯେଉଁ ବ୍ୟକ୍ତିଙ୍କ ପାଖରେ କମ୍ବଳ ଅଛି ।
ପ୍ରଶ୍ନ— ଗଙ୍ଗା କେଉଁ ନଗରୀର ଶୀତଳ ବାହିନୀ ଅଟନ୍ତି ।
ଉତ୍ତର— ଗଙ୍ଗା, କାଶୀ ନଗରୀର ଶୀତଳ ବାହିନୀ ଅଟେ ।

ପ୍ରଶ୍ନ ଭିତରେ ଉତ୍ତର ଥିବା ହେତୁ ପଣ୍ଡିତମାନେ ଉତ୍ତର ଦେଇ ନପାରି ମଉନ ହେଲେ । ଏଣେ କାଳିଦାସଙ୍କ ବୁଦ୍ଧି ଓ ଚତୁରଣ ଦେଖି ପଣ୍ଡିତମାନେ ଭୀଷଣ ରାଗି ଗଲେ । ସେମାନେ କାଳିଦାସଙ୍କ ସର୍ବନାଶ କରିବା ନିମନ୍ତେ ଦୃଢ଼ପ୍ରତିଜ୍ଞା କଲେ । ପଣ୍ଡିତମାନଙ୍କ ମନରେ ଅଶାନ୍ତି ସୃଷ୍ଟି ହେବା ଦେଖି କାଳିଦାସ ଭୋଜରାଜାଙ୍କ ରାଜ ସଭା ତ୍ୟାଗକରି ଆଉ କେତେ ରାଜ ଭବନକୁ ଯାତ୍ରାକଲେ । ସେ ସବୁଠାରେ ଗୌରବ ଲାଭ କରି ଅନେକ ବର୍ଷ ପରେ କର୍ଣ୍ଣାଟ ରାଜ ସଭାରେ ପହଞ୍ଚିଲେ । ସେଠାରେ ବଲ୍ୱନ ନାମକ ଜଣେ ପଣ୍ଡିତ କ୍ଷମତାଶାଳୀ ହୋଇଥିଲେ । ସେ କବି କାଳିଦାସଙ୍କ ଦ୍ୱାରା ପରାଜିତ ହୋଇ ତାଙ୍କର ଶତ୍ରୁତା ଚରଣ କଲେ । ଏଣୁ କାଳିଦାସ ପଣ୍ଡିତମାନଙ୍କ ସହିତ ଯୁକ୍ତି-ତର୍କ କରିବାକୁ ଆଉ ଇଚ୍ଛାକଲେ ନାହିଁ । ଏହି ସମୟରେ ବିକ୍ରମାଦିତ୍ୟଙ୍କ ଦ୍ୱାରା ପ୍ରେରିତ ଦୂତ କାଳିଦାସଙ୍କୁ କର୍ଣ୍ଣାଟ ରାଜ ସଭାରେ ଭେଟିଲେ ଓ

ରାଜାଙ୍କ ନିମନ୍ତ୍ରଣ ଜଣାଇ ତୁରନ୍ତ ସଙ୍ଗରେ ସେନ ଯିବାର ବ୍ୟବସ୍ଥା କଲେ ।

## ବିକ୍ରମାଦିତ୍ୟଙ୍କ ରାଜ ସଭାକୁ ପ୍ରତ୍ୟାବର୍ତ୍ତନ—

ରାଜା କାଳିଦାସଙ୍କୁ ଫେରିଆସିଥିବା ଦେଖି ଅତ୍ୟନ୍ତ ପ୍ରୀତ ହେଲେ । କାଳିଦାସ ଚାଲିଯିବା ପରେ ଘଟକର୍ପର ତାଙ୍କର ସ୍ଥାନ ଅଧିକାର କରିଥିଲେ । କାଳିଦାସଙ୍କୁ ପୁନଶ୍ଚ ରାଜାଙ୍କ ସମ୍ମୁଖ ଆସନ ଦିଆଗଲା ଏଥିରେ ଘଟକର୍ପରଙ୍କ ସମ୍ମାନରେ ଆଞ୍ଚ ଆସିଲା । ରାଜା କାଳିଦାସଙ୍କୁ ଯେତେ ଭଲ ପାଉଥିଲେ ମଧ୍ୟ ପଣ୍ଡିତମାନେ କାଳିଦାସଙ୍କ ପରମ ଶତ୍ରୁ ହୋଇ ଠିଆହେଲେ । କି ଉପାୟ କରି କାଳିଦାସଙ୍କୁ ରାଜ ସଭାରୁ ବିତାଡ଼ିତ କରିବେ ସେହି ଚିନ୍ତା ସମସ୍ତଙ୍କ ମନରେ ଲାଗି ରହିଲା ।

ଦିନକର ଘଟଣା କାଳିଦାସଙ୍କର ଗୋଟିଏ ଦୁର୍ବଳତା ସେମାନେ ଖୋଜି ପାଇଲେ, ସେ ଆମିଷ ପ୍ରିୟ । ପଣ୍ଡିତମାନେ ରାଜାଙ୍କୁ କହିଲେ "ମହାରାଜା ଆମେ ରାଜ ସଭାରେ ଆଉ ବସିବୁ ନାହିଁ । କାଳିଦାସ ଦେଶ ଭ୍ରମଣ କରି ଅତି ମାତ୍ରାରେ ଆମିଷ ଭୋଜୀ ହୋଇ ପଡ଼ିଛନ୍ତି ।" ରାଜା ଆମିଷକୁ ଘୃଣା କରନ୍ତି । ସେ ଚମକି ପଡ଼ିଲେ କହିଲେ ଏଡ଼େ ବଡ଼ ପଣ୍ଡିତ ଫେରେ ବ୍ରାହ୍ମଣ ସେ ଆମିଷ ଖାଆନ୍ତି ! ହେଉ ଥରେ ପ୍ରତ୍ୟକ୍ଷରେ ମୋତେ ଦେଖାଇ ଦିଅ । ତାର ବ୍ୟବସ୍ଥା କରାଯିବ । ତୁମ୍ଭ ମାନଙ୍କର କଥାରେ ବିଶ୍ୱାସ ପଡ଼ି କାଳିଦାସ ପରି ଜଣେ ମହାନ ପଣ୍ଡିତଙ୍କୁ ମୁ ରାଜ ସଭାରୁ ଅନ୍ତର କରି ବସି ପାରିବି ନାହିଁ ।

କାଳିଦାସଙ୍କ ଦୁର୍ବଳତା ରାଜାଙ୍କୁ ଦେଖାଇବା ନିମନ୍ତେ ପଣ୍ଡିତମାନେ କାଳିଦାସଙ୍କର ପଛେ ପଛେ ଲାଗିଛନ୍ତି । ଏହି କଥା କାଳିଦାସ ଜାଣନ୍ତି ନାହିଁ । ସେ ଥରେ ବଡ଼ ମାଛଟିଏ କିଣି ବଜାରରୁ ଘରକୁ ଫେରୁଥିବା ବେଳେ ପଣ୍ଡିତମାନେ ଦେଖି, ରାଜାଙ୍କୁ ଜଣାଇବାକୁ ଦ୍ରୁତ ବେଗରେ ଦୌଡ଼ିଲେ ରାଜା ପଣ୍ଡିତ ମାନଙ୍କୁ ଅବଜ୍ଞା କରିବେ କିପରି ପଣ୍ଡିତ ମାନଙ୍କ ସତ୍ୟାସତ୍ୟ ବୁଝିବା ନିମନ୍ତେ ରାଜା କାଳିଦାସଙ୍କ ପାଖକୁ ଗଲେ ରାଜ ଆସୁଥିବା ଦେଖି କାଳିଦାସ ମାଛଟିକୁ ଗାମୁଛାରେ ଗୁଡ଼ାଇ କାଖରେ ଧରିଲେ ମନେ ମନେ ଭଗବତୀ ସରସ୍ୱତୀଙ୍କୁ ଧ୍ୟାନ କଲେ । କହିଲେ ମା ତୋର ଭରସା ।

ରାଜା ହସି ହସି ପଚାରିଲେ, ପଣ୍ଡିତେ କାଖରେ କଣ ଧରିଛନ୍ତି । କାଳିଦାସ ନିର୍ଭୟରେ ଉତ୍ତର କଲେ ମହାରାଜ, ଖଣ୍ଡିଏ ରାମାୟଣ ଗ୍ରନ୍ଥ । ହସି ହସି ରାଜା ପୁଣି ପଚାରିଲେ ଏ କ'ଣ ରକ୍ତ ବହୁଛି ? କାଳିଦାସ ପୁନର୍ବାର ହସି ହସି କହିଲେ ବହିବନି । ରାମ ରାବଣର ଯୁଦ୍ଧ ଯେତେ-ବେଳେ ହେଉଛି କ'ଣ କ୍ଷେତ୍ରରେ ଆଉ କ'ଣ ବୋହୁଥାନ୍ତା । ରାଜା ପୁନଶ୍ଚ ପଚାରିଲେ ଏ ଦୁର୍ଗନ୍ଧ କାହିଁକି ପଣ୍ଡିତେ କାଳିଦାସ ତାର ଉତ୍ତର ଦେଲେ ବହୁତ ମଢ଼ା ପଡ଼ିଛି ଗନ୍ଧ ହେବା କଥା ହେଉଛି । ରାଜା ମନେ ମନେ ରାଜା ରାଗି ଗଲେଣି । ସେ ଆଉ ସମ୍ଭାଳି ପାରିଲେ ନାହିଁ ଜଣେ ପଣ୍ଡିତ ପଣ୍ଡିତମାନଙ୍କ ସମ୍ମୁଖରେ ରାଜାଙ୍କୁ ଭୁଲେଇ ଯାଉଛନ୍ତି । ଏହାଙ୍କ କଣ ଚିନ୍ତା ସାହାସ ରାଜା ଆଦେଶ ଦେଲେ, ପଣ୍ଡିତେ ଯେ କନା ଫିଟାଇ ମୋତେ ତୁମର ରାମାୟଣ ଗ୍ରନ୍ଥଟି ଥରେ ଦେଖାଇ ଦେଲ । କାଳିଦାସ କହିଲେ ଏହି କଥା ପାଇଁ ଆପଣଙ୍କ ଏତେ ସନ୍ଦେହ କାହିଁକି ମହାରାଜ ହୋଇ ଦେଖନ୍ତୁ କହି ଗାମୁଛାଟିକୁ ଫିଟାଇ ଦେଲେ

ଗାମୁଛାଟି ଖୋଲି ଦେବା ମାତ୍ରେ, ସେଥି ଭିତରେ ଗୋଟିଏ ତାଳପତ୍ର ଖେଳା ରମାୟଣ ଥିବା ଦେଖାଗଲା । ଏ ଘଟଣା ଦେଖି ରାଜା ଓ ପଣ୍ଡିତମାନେ ଲଜ୍ଜିତ ହେଲେ । ତତ୍ ସଙ୍ଗେ ସଙ୍ଗେ ସକଳଙ୍କର ଆଉ ଅବଗତ ହେଲା ଯେ ନିମନ୍ତେ ବାକି ରହିଲା ନାହିଁ ଯେ କାଳି ଦାସଙ୍କୁ ଦେବୀ ସର୍ବଦା ସହାୟ ଅଛନ୍ତି । କାଳି ଦାସଙ୍କ ମାନ ରକ୍ଷା କରିବା ନିମନ୍ତେ ଦୈବଶକ୍ତି କପରି କାର୍ଯ୍ୟ କରୁଅଛି ସମସ୍ତେ ସାକ୍ଷ ଲକ୍ଷ୍ୟ ପ୍ରତ୍ୟକ୍ଷରେ ଦେଖି ପାରିଲେ । ସେହି ଦିନ ଠାରୁ ରାଜା ଓ ପଣ୍ଡିତମାନେ କାଳିଦାସଙ୍କ ବିରୁଦ୍ଧାଚରଣ କରିବା ନିମନ୍ତେ ଶଙ୍କି ଗଲେ । ରାଜା କାଳିଦାସଙ୍କ ପ୍ରତି ଭଗବତୀ ସରସ୍ୱତୀଙ୍କ ଅପାର କରୁଣା ଥିବା ଜାଣି ସବୁ ପଣ୍ଡିତଙ୍କ ଅପେକ୍ଷା ତାଙ୍କୁ ଅଧିକ ଆଦର ଓ ସମ୍ମାନ କରିବାକୁ ଲାଗିଲେ ।

ଏହି ଘଟଣା ପର ଦିନରୁ କାଳିଦାସ ଆଉ ଆମିଷ ଭୋଜନ କଲେ ନାହିଁ । ସେ ନିଜର ଏହି କର୍ମ ଲାଗି ଲଜ୍ଜିତ ହେଲେ ଓ ଜଣେ ପଣ୍ଡିତ ହୋଇ କିହ୍ୱା ଲାଳସାରେ ଆମିଷ ଭୋଜନ କରୁଥିବା ଯୋଗୁଁ ଘୋର କ୍ଷୋଭ ପ୍ରକାଶ କଲେ । କାଳି ଦାସଙ୍କର ମନ୍ଦ ଅଭ୍ୟାସ ରାଜାଙ୍କ ଯୋଗୁଁ ଦୂର ହୋଇଗଲା । ସେଦିନ କାଳିଦାସ ମନେ ମନେ ସ୍ଥିର କଲେ ଯେ ସେ ମଧ୍ୟ ରାଜାଙ୍କର ଏକ ବଦାଭ୍ୟାସକୁ ଦମନ କରିବେ ।

### ରାଜାଙ୍କୁ ଉଚିତ ଶିକ୍ଷାଦାନ—

ମହାରାଜ ବିକ୍ରମାଦିତ୍ୟଙ୍କ ଠାରେ ଅନେକ ସଦ୍‌ଗୁଣ ଥିଲେ ସୁଦ୍ଧା ଗୋଟିଏ ବଦଗୁଣ ଥିଲା ତାହା ହେଉଛି ଯୁଥ କ୍ରୀଡ଼ା । ରାଜା ଯୁଥ କ୍ରୀଡ଼ାରେ ବସି ଗଡ଼ିଲେ ଘଣ୍ଟା ଘଣ୍ଟା ଆନନ୍ଦରେ ଖେଳୁଥାନ୍ତି । ସେତିକିବେଳେ କେହିଁ ପ୍ରଜା ନିଜର ଦୁଃଖ ଗୁହାରି ଜଣାଇବାକୁ

ଆସିଲେ ପ୍ରହରୀମାନେ ରାଜା କାର୍ଯ୍ୟ ବ୍ୟସ୍ତ କହି ଦୁଆରୁ ଫେରାଇ ଦିଅନ୍ତି । ଏହା ଫଳରେ ପ୍ରଜାମାନେ ବାହାରେ ରାଜାଙ୍କର ଘୋର ନିନ୍ଦା ଗାନ କରନ୍ତି ।

କାଳିଦାସ ଅନେକ ସମୟରେ ପ୍ରଜାମାନଙ୍କ ମୁଖରୁ ରାଜାଙ୍କର ନିନ୍ଦା ଶୁଣିଥିଲେ ସେ ରାଜାଙ୍କର ଜଣେ ପାର୍ଶ୍ୱଲୋକ ହୋଇ ରାଜାଙ୍କୁ ତାଙ୍କରଦୁର୍ବଳତା ବିଷୟରେ କିଛି କହିପାରନ୍ତି ନାହିଁ । କି ପ୍ରଜାମାନେ ତାଙ୍କୁ କିଭଳି ସମାଲୋଚନା କରନ୍ତି । ତାହା ଜଣାଇ ପାରନ୍ତିନାହିଁ ଏ ମାଛଘଟଣା ପରେ କାଳିଦାସ ମନେ ମନେ ସ୍ଥିର କଲେ ଯେ ସେ ଏକ ଉପାୟ ଦ୍ୱାରା ରାଜାଙ୍କୁ ତାଙ୍କର ଦୁର୍ବଳତା ବିଷୟରେ ଜଣାଇ ଦେବେ ।

ଦିନେ ସାୟଂ କାଳରେ ରାଜା ନଗର ଭ୍ରମଣରେ ବାହାରିବା ବେଳେ କାଳିଦାସ କୃତ୍ରିମ ଦାଢ଼ି ନିଶ ଲଗାଇ ଏକ ନକଲି ବାବାଜୀ ବେଶରେ ଗୋଟିଏ ମାଂସ ଦୋକାନ ପାଖରେ ଠିଆ ହୋଇ ମାଂସ କିଣିଲା ପରି ଅଭିନୟ କଲେ । ରାଜା ଏଘଟଣା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେ ସନ୍ୟାସୀଙ୍କର ଏଭଳି କାର୍ଯ୍ୟ ଦେଖି ତାଙ୍କୁ ପାଖକୁ ଡକାଇ ପଚାରିଲେ ତୁମେ ଜଣେ ସନ୍ୟାସୀ ହୋଇ ମାଂସ ଭକ୍ଷଣ କରୁଛ ସନ୍ୟାସୀ ନିର୍ଭିକ ହୋଇ ହସି ହସି କହିଲେ—ହଁ ମହାରାଜ ସୁରାପାନ କରିବା ପରେ ମାଂସ ନ ଖାଇଲେ ସେଥିରେ ତୃପ୍ତି ଲାଗେ ନାହିଁ । ସନ୍ୟାସୀଙ୍କ ମୁଖରୁ ସୁରାପାନ କଥା ଶୁଣି ରାଜା ଚମକି ଉଠିଲେ । ସେ ଆଶ୍ଚର୍ଯ୍ୟ ହୋଇ ପୁଣି ପ୍ରଶ୍ନକଲେ ତୁମେ ସୁରାପାନ କର । ସନ୍ୟାସୀ ପୁଣି କହିଲେ ଯେତେବେଳେ ଯୁଆ ଖେଳରେ ହାରିଯାଏ ମନ କଷ୍ଟ ହୁଏ ତେଣୁ ମଦ୍ୟପାନ ନ କଲେ କ'ଣ ଶାନ୍ତିରେ ହୋଇପାରେ ? ସନ୍ୟାସୀ ଜଣେ ଯୁଆ ଖେଳାଳି ବୋଲି ଜାଣି ରାଜା ସନ୍ୟାସୀଙ୍କ ଉପରେ ଖୁବ୍ କୋପ ପ୍ରକାଶ କଲେ ହେଲେ ରାସ୍ତା ଉପରେ ସନ୍ୟାସୀଙ୍କ ଭର୍ତ୍ସନା କରିବା ଦଣ୍ଡ ଦେବା ଉଚିତ ମନେ

ନ କରି ସନ୍ୟାସୀଙ୍କୁ ଦରବାରକୁ ନେବା ନିମନ୍ତେ ଅନୁଚର ବର୍ଗଙ୍କୁ ଆଦେଶ କରି ଚାଲିଗଲେ । ସେ ଦିନ ସନ୍ଧ୍ୟାପରେ ଦରବାରରେ ଘରି ଲୋକ ଗହଳି ଦେଖାଗଲା । ଜଣେ ଭଣ୍ଡାଗାରର ସାଧୁଙ୍କୁ ଦଣ୍ଡ ଦିଆଯିବ ଜାଣି ଅନେକ ବ୍ୟକ୍ତି ଦରବାରରେ ରୁଣ୍ଡ ହୋଇ ଥିଲେ, ରାଜା ସନ୍ୟାସୀଙ୍କୁ ପଚାରିଲେ ହେ ସନ୍ୟାସୀ ତୁମେ ଜଣେ ସାଧୁ ପୁରୁଷର ବେଶ ଧାରଣ କରି ଯୁଅର୍କିଡ଼ା, ମଦ୍ୟପାନ ମାଂସ ଭକ୍ଷଣ କରୁଛ କରୁଛ । ଏହି ସବୁ କର୍ମ ଦ୍ୱାରା ତୁମେ ସନ୍ୟାସୀଙ୍କର ମର୍ଯ୍ୟାଦା ନଷ୍ଟ କରୁନାହଁ କି ? ସନ୍ୟାସୀ କହିଲେ ମହାରାଜା "ନଷ୍ଟସ୍ୟ କାନ୍ୟାଗତି" ଯେ ନଷ୍ଟ ହୋଇ ଯାଇଛି ତା'ର ଗତି କ'ଣ ?

ସନ୍ୟାସୀଙ୍କ ଏଭଳି ଉତ୍ତରରେ ରାଜା ଆହୁରି କୁପିତ ହେଲେ । ସନ୍ୟାସୀ କହିଲେ ଯେଉଁ ଦେଶରେ ରାଜା ନିଜର ପ୍ରଜାରଞ୍ଜନ କର୍ତ୍ତବ୍ୟ ଭୁଲି ଯୁଅର୍କିଡ଼ାରେ ଦିନରାତି ମାତିଥାନ୍ତି ସେହିଦେଶର ପ୍ରଜାମାନେ ସାଧୁମାନେ ରାଜାଙ୍କୁ ଅନୁକରଣକରି ଯୁଅର୍କିଡ଼ା କଲେ ମଦ୍ୟପାନ କଲେ ମାଂସ ଭକ୍ଷଣ କଲେ ଦୋଷ କଣ । ହେ ରାଜା ରାଜା ହେଉଛନ୍ତି ପ୍ରଜା କୁଳର ଆଦର୍ଶ ପ୍ରଜାମାନେ ସର୍ବଦା ରାଜାଙ୍କୁ ଅନୁସରଣ କରିବେ । ଏଥିରେ ପ୍ରଜାର ଦୋଷ କଣ ?

ରାଜା ନିଜ ଆଡ଼କୁ ଦୃଷ୍ଟି ଫେରାଇଲେ ସେ ନିଜେ ଲଜ୍ଜିତ ହେଲେ କାରଣ ସେ ନିଜେ ସର୍ବଦା ଯୁଅର୍କିଡ଼ାରେ ଲାଗିଥାନ୍ତି ଯୁଅର୍କିଡ଼ାରେ ଲାଗିଥିବା ବେଳେ ଭୋଜନ ଶୟନ ଭ୍ରମଣ ମଧ୍ୟ ଭୁଲି ଯାଆନ୍ତି ।

ରାଜା ଚିନ୍ତା ମଗ୍ନ ଥିବା ବେଳେ ସନ୍ୟାସୀ ମୁଖରୁ ଜଣ ଓ ଦାଢ଼ି ବାହାରି କରି ସନ୍ୟାସୀ ବେଶ ତ୍ୟାଗ କଲେ । ରାଜା ତାଙ୍କୁ କାଳିଦାସ ବୋଲି ଚିହ୍ନିପାରି ସ୍ନେହରେ କୋଳାଗ୍ରତ କଲେ । କହିଲେ

କାଳିଦାସ ତୁମେ ଆଜ ଯେଉଁଳି ଅଭିନୟ କଲ ତଦ୍ୱାରା ମୋର ଏକ ଅମାର୍ଜିତ ଭୁଲ ସଂଶୋଧିତ ହୋଇଗଲା । ମୁଁ ତୁମକୁ ଆଜଯାଏଁ ମୋର ସଭା ପଣ୍ଡିତ ମହାନ କବି ଭାବରେ ଗ୍ରହଣ କରିଥିଲି ବର୍ତ୍ତମାନ ମୋର ପରମ ହିତକାଂକ୍ଷୀ ବନ୍ଧୁ, ଗୁରୁ, ଉପଦେଷ୍ଟା ବୋଲି ଜାଣିଲି । ମୁଁ ଆଜ ଠାରୁ ଯୁଦ୍ଧଲିପ୍ସା ତ୍ୟାଗ କରି ପ୍ରଜା ରଞ୍ଜନ ନିମନ୍ତେ ମନଯୋଗ କରିବି ।

କାଳିଦାସ ଅତ୍ୟନ୍ତ ନିର୍ଭିକମନା, ସାହାସୀ, ସମାଲୋଚକ ଓ ଜ୍ଞାନ ବୋଲି ସର୍ବତ୍ର ବିଘୋଷିତ ହେଲେ ସବସାଧାରଣ ଲୋକେ କାଳିଦାସଙ୍କ ସହିତ ଅବୋଧରେ ମିଶି ପାରୁଥିଲେ ।

## ଲୋକ ପ୍ରିୟତା ଅର୍ଜନ

ଦିନେ ଦୁଇଜଣ ବ୍ରାହ୍ମଣ କାଳିଦାସଙ୍କ ପାଖକୁ ଆସି କହିଲେ ହେ ପଣ୍ଡିତେ ରାଜା ଯେଉଁ ଦିନ ଆଦେଶ କଲେ ଯେ, ଯେ ନୂଆ ଶ୍ଳୋକ ରଚନା କରିବ ସେହି ପୁରସ୍କାର ପାଇବ । ସେହି ଦିନରୁ ଏ ଅଧମ ବ୍ରାହ୍ମଣ ଦୁଇଟି ଆଉ ରାଜ ସଭାକୁ ଯାଇନପାରି ଅତି ଦୁଃଖରେ ଚଳୁଛୁ । ଆପଣ ଆମ ଦୁଇ ଜଣଙ୍କୁ ଟିକିଏ କୃପା କଲେ ଆମେ ଗୋଟିଏ ନୂଆ ଶ୍ଳୋକ ଧରି ରାଜାଙ୍କୁ ଭେଟିବୁ ଓ ଆପଣଙ୍କ ଦୟାରୁ ଆମ କୁଟୁମ୍ବ ଚଳିବ ।

କାଳିଦାସଙ୍କ ମନରେ ଦୟା ହେଲା ସେ ଦୁଇଜଣଙ୍କୁ ଦୁଇଟି ଶ୍ଳୋକ କହିବାକୁ କହିଲେ ବ୍ରାହ୍ମଣ ଦୁଇଟି ମୂର୍ଖଥିଲେ । ଶାସ୍ତ୍ର ବେଶୀ ପଢ଼ିନାହାନ୍ତି କ'ଣ ଅବା କହିବେ । ସେଥିରୁ ଜଣେ ବହୁତ ମନେ ପକାଇ ଉପନିଷଦରୁ ପଦେ ମାତ୍ର କହିଲା—ଅଣୋ ରଣିୟାନ୍ ମହତୋ ମହାନ୍ । ଅର୍ଥାତ୍ ସେହି ପରମାତ୍ମା କ୍ଷୁଦ୍ରରୁ କ୍ଷୁଦ୍ର ଯେପରି ଅନନ୍ତ । ଅନ୍ୟ ଜଣେ କହିଲେ—ମୋତେ ପଇତା ମନ୍ତ୍ରରୁ ଧାଡ଼ିଏ ଆସୁଛି—ଯଜ୍ଞ ପବିତଂ

ପରମଂ ପଦତଂ କାଳିଦାସ ଦୁଇଜଣଙ୍କର ଦୁଇଟି ପଦକୁ ରଖି ନୂତନ ଶ୍ଳୋକଟିଏ ରଚନା କଲେ—

ଅଣୋରଣିଯ୍ୟାନ୍ ମହତୋ ମହୀୟାନ୍
ମଧ୍ୟ ତନ୍ନମ୍ବଷ୍ଟ ଯଦଙ୍ଗ ନାଯ୍ୟାମ୍
ତଦଙ୍ଗ ହସ୍ତଦ୍ରୁ ରସେନ ଲିପ୍ତମ୍
ଯଂଙ୍କା ପଦତଂ ପରମଂ ପଦତଂ

ଶ୍ଳୋକଟି ସଙ୍ଗେ ସଙ୍ଗେ ରଚନା କରି କାଳିଦାସ ସେ ଦୁହିଁଙ୍କୁ ରାଜାଙ୍କୁ ଭେଟିବାକୁ କହିଲେ । ପଣ୍ଡିତ ଦୁଇଜଣ ଶ୍ଳୋକ ଧରି ରାଜାଙ୍କ ପଣ୍ଡିତ ସଭାରେ ଉପସ୍ଥିତ ହେଲେ । ରାଜାଙ୍କ ଆଦେଶରେ ଅନ୍ୟ ପଣ୍ଡିତମାନେ ଶ୍ଳୋକଟିକୁ ଅର୍ଥ କରି ରାଜାଙ୍କୁ ବୁଝାଇଲେ । ଯେଉଁ ନାରୀର କଟି ଭାଗ ଅଣୁ ବା ଅତି କ୍ଷୁଦ୍ର ପିଣ୍ଡ ଓ ଉରୁ ଭାଗ ପୃଥଳ ଅଟେ ସେହି ନାରୀର ଦେହରେ ଲାଗିଥିବା ହଳଦୀ ଯେଉଁ ଯଙ୍କ ପଦରେ ଲାଗିଥାଏ ସେହି ଏକ ଶ୍ରେଷ୍ଠ ପଦତ ।

ପଣ୍ଡିତ ଦୁଇଙ୍କର ଏହି ନୂତନ ଓ ଚମତ୍କାର ଶ୍ଳୋକ ଶୁଣି ରାଜା ଅତ୍ୟନ୍ତ ପ୍ରସନ୍ନ ହେଲେ ସେ ବ୍ରାହ୍ମଣ ଦ୍ୱୟଙ୍କୁ ଏକଶତ ଏକ ସୁବର୍ଣ୍ଣ ମୋହର ଦେଇ ବିଦାୟ କରିଦେଲେ । ସେହି ଦିନଠୁ ଅନେକ ବ୍ରାହ୍ମଣ କାଳିଦାସଙ୍କ ଠାରୁ ନୂଆ ଶ୍ଳୋକଟିଏ ଲେଖାଇ ନେବାକୁ ପିଷ୍ଟ କରିଥାନ୍ତି । ତାର ଫଳରେ କାଳିଦାସ ବ୍ରାହ୍ମଣମାନଙ୍କର ତଥା ପଣ୍ଡିତ ଶିକ୍ଷିତ ବ୍ୟକ୍ତିମାନଙ୍କର ଦିନକୁ ଦିନ ଅଧିକ ପ୍ରିୟ ହେବାକୁ ଲାଗିଲେ ଏଣେ ରାଜା ତେଣେ ପ୍ରଜାମାନେ କାଳିଦାସଙ୍କ ଗୁଣ ପ୍ରତିଭା ପାଣ୍ଡିତ୍ୟକୁ ଭୂରି ଭୂରି ପ୍ରଶଂସା କରିବା ଦେଖି ଅନ୍ୟ ସଭା ପଣ୍ଡିତମାନେ ଇର୍ଷାରେ ଜଳି ଯାଉଥାନ୍ତି । ସେମାନେ କାଳିଦାସଙ୍କୁ ବାହାରେ ସମ୍ମାନ କରନ୍ତି ମାତ୍ର ଭିତରେ ଭିତରେ ତାଙ୍କର ସର୍ବନାଶ କରିବାକୁ ଉପାୟ ଚିନ୍ତା କରୁଥାନ୍ତି ।

ସେତେବେଳେ ବେଶ୍ୟାମାନେ ବିଭିନ୍ନ ସ୍ଥାନରେ କବିମାନଙ୍କ ନୂତନ କବିତା, ସଙ୍ଗୀତ ଆକାରରେ ଗାନ କରି ନୃତ୍ୟ କରୁଥାନ୍ତି । ତଦ୍ୱାରା ସେମାନେ ଉଦର ପୋଷଣ କରନ୍ତି । କାଳିଦାସ ନିଜର କବିତା ଓ ନୂତନ ସଙ୍ଗୀତ ଗୁଡ଼ିକ ସେହି ବେଶ୍ୟାମାନଙ୍କ ଦ୍ୱାରା ଲୋକରେ ପ୍ରଚାର କରିବା ନିମନ୍ତେ ଅନେକ ସମୟ ବେଶ୍ୟାମାନଙ୍କ ଘରକୁ ଯାଆନ୍ତି ଓ ସେମାନଙ୍କୁ ସେହି ସଙ୍ଗୀତ ଶିଖାଇ ଥାନ୍ତି । ପଣ୍ଡିତମାନେ ଏହାକୁ କାଳିଦାସଙ୍କ ଆଉ ଏକ ଦୁର୍ବଳତା ବୋଲି ସ୍ଥିର କଲେ ।

କବିଙ୍କର ଏହି ଦୁର୍ବଳତାର ସୁଯୋଗ ନେଇ କେତେକ ପଣ୍ଡିତ କାଳିଦାସ କାହା ଗୃହରେ ଅଧିକ କାଳ ରହନ୍ତି ତାହାର ସଠିକ ପରିଚୟ ପାଇଲେ । ସେହି ବେଶ୍ୟାର ନାମ ହେଉଛନ୍ତି ବିଷଦାଳିକା ପଣ୍ଡିତମାନେ କାଳିଦାସଙ୍କୁ ବିନାଶ କରିବା ନିମନ୍ତେ ବିଷଦାଳିକାକୁ ପ୍ରଚୁର ଅର୍ଥ ଦେଇ ଲୋଭାସକ୍ତ କରାଇଲେ । ପ୍ରଥମେ ପ୍ରଥମେ ବିଷଦାଳିକା ଏହିପରି ଏକ କୁତ୍ସିତ ତଥା ନିନ୍ଦନୀୟ କର୍ମ କରିବାକୁ ଅମଙ୍ଗ ହେଉଥିଲା କିନ୍ତୁ ପଣ୍ଡିତମାନେ ଯେତେବେଳେ ତାକୁ ଗୁଡ଼ାଏ ଧନ ପ୍ରଦାନ କଲେ ତାହା ଦେଖି ବିଷଦାଳିକାର ଚିତ୍ତ ଭୁଲିଗଲା । ଧନ ଲୋଭରେ ସେ କ'ଣ କରିବାକୁ ଯାଉଛି ତାହା ଭଲ କି ମନ୍ଦ କିଛି ଚିନ୍ତା କରିପାରିଲା ନାହିଁ । ଯେଉଁ କାଳିଦାସଙ୍କୁ ପାଖରେ ପାଇ ସେ ଏତେ ଭଲ ପାଉଥିଲା ତାଙ୍କୁ କପରି ହତ୍ୟା କରିବ ସେହି କଥାହିଁ ଚିନ୍ତା କଲା । ରାଜା କାଳିଦାସଙ୍କୁ ଅତି ମାତ୍ରାରେ ଭଲ ପାଉଥିବା ଯୋଗୁଁ କାଳିଦାସଙ୍କ ହତ୍ୟା କଥା ରାଜାଙ୍କ କାନକୁ ଯେପରି ନ ଯିବ ସେଥି ନିମନ୍ତେ ମଧ୍ୟ ଉପାୟ ଚିନ୍ତା କଲା । ସେ ଶେଷକୁ ତାର ମନକୁ ଆସିଲା ଯେ କାଳିଦାସ ନିଦ୍ରାଭିଭୂତ ଥିବା ସମୟରେ ତାଙ୍କ ମଥାରେ ଶିଳ ଛେଚି ତାଙ୍କୁ ହତ୍ୟା କରିବ ଆଉ ତାଙ୍କର ଶବକୁ ଅଗଣାରେ ଗାତ ଖୋଳି ପୋତି ଦେବ । ବିଷଦାଳିକାର ମନରେ ବିଚାର ସ୍ଥିର ହେବା ପରେ ସେ କାଳିଦାସଙ୍କୁ

ସବୁଦିନ ଠାରୁ ଅଧିକ ଆଦର ଘରକୁ ଡାକି ନେଇ ତାଙ୍କର ସେବା ସତ୍କାର କରିଥିଲା । ବିଷଦାଳିକାର ଏହି ନାଟକୀୟ ଅଭିନୟ କାଳିଦାସ ବୁଝିପାରିଲେ ନାହିଁ । ସେ ବିଷଦାଳିକାର ସେବା ସତ୍କାରରେ ଆନନ୍ଦ ଲାଭ କରି ତାର ଗୃହର ସୁସଜ୍ଜିତ ହୋଇଥିବା ପଲଙ୍କରେ ଶାନ୍ତିରେ ଶୋଇ ସୁଖରେ ରାତିଟି କଟାଇବାକୁ ଭାବିଥିଲେ । କିନ୍ତୁ ବିଧିର ଇଚ୍ଛା ସେପରି ନଥିଲା ସେ ଦିନ କାଳିଦାସ ବିଷଦାଳିକାଙ୍କ ଗୃହରେ ଅତିଥି ଭାବରେ ପ୍ରବେଶ କରିବା ମାତ୍ରେ ବିଷଦାଳିକା ପୂର୍ବ ଅପେକ୍ଷା ଅଧିକ ସ୍ନେହରେ ସ୍ୱାଗତ କଲେ । ସେ ଦିନ ଉତ୍ତମ ନୃତ୍ୟ ଗୀତ କରି କାଳିଦାସଙ୍କ ମନକୁ ତୃପ୍ତ କଲେ ।

ନୃତ୍ୟ ଗୀତ ଦର୍ଶନ କରୁ କରୁ କାଳିଦାସ ନିଦ୍ରାଭିଭୂତ ହୋଇ ପଲଙ୍କ ଉପରେ ଶୋଇ ପଡ଼ିଲେ । ଏ ସୁଯୋଗରେ ବିଷଦାଳିକା କାଳିଦାସଙ୍କ ମସ୍ତକ ଉପରେ ଶିଳଟିଏ ଛେଚି ଦେଇ ତାଙ୍କର ଜୀବନ ଦୀପକୁ ଲିଭାଇ ଦେଲା ଶିଳର ଭୀଷଣ ଆଘାତ ପାଇ କାଳିଦାସ ବିଚଳିତ ହୋଇ ଉଠିଲେ ସେହି ମୃତ୍ୟୁଷ ଅବସ୍ଥାରେ କାଳିଦାସ ନିଜ ରକ୍ତରେ ଆଙ୍ଗୁଳି ବୁଡ଼ାଇ ବିଷଦାଳିକାଙ୍କ ପରିଧାନ କରିଥିବା ବସ୍ତ୍ର ମଝିରେ ଏକ ଧାଡ଼ି ଲେଖିଦେଲେ ତାହା ଆଗପଟୁ ଓ ପଛପଟୁ ପଢ଼ିଲେ ସେହି ଏକ ଅର୍ଥ ପ୍ରକାଶ ହେଉଥିଲା । କାଳିଦାସ ବିନାଶାନା ନାଶାନା ବିଷଦାଳିକା ।"

ବିଷଦାଳିକା ନାମକ ନାରୀ ଦ୍ୱାରା କାଳିଦାସ ବିନାଶ ହୋଇଗଲେ ।

କାଳିଦାସଙ୍କର ମୃତ ଶରୀରକୁ ବିଷଦାଳିକା କୌଶଳ କରି ନିଜ ଗୃହ ଅଗଣାରେ ଗଭୀର ଗର୍ତ୍ତ କରି ପୋତି ପକାଇଲା । ତା ଆର ଦିନ କେହି କାଳିଦାସଙ୍କୁ ଆଉ କେଉଁଠି ଦେଖିବାକୁ ପାଇ ନାହାନ୍ତି । ରାଜ ଦରବାରରେ କାଳିଦାସଙ୍କୁ ନପାଇ ରାଜା ବଡ଼ ବିବ୍ରତ ହୋଇ

ପଡ଼ିଥିଲେ । କାଳିଦାସଙ୍କ ରହିବା ଯାଗା କିଛି ଠିକଣା ନଥିଲା । ବହୁ ଖୋଜା ହେଲା । କେହି ଜଣେ ଗ୍ରାମର ଧୋବାଘରେ ପଡ଼ିଥିବା ଖଣ୍ଡିଏ ବସ୍ତ୍ର ରାଜାଙ୍କୁ ଦେଇ କହିଲା ମହାରାଜ ଏହି ବସ୍ତ୍ରରେ ଲେଖା ଯାଇଛି, "କାଳିଦାସ ବଦାଶାନା ନାଶାନା ବିଷଦାଳିକା"—

ରାଜା ରକ୍ତର ଏହି ରକ୍ତ ରଞ୍ଜିତ ବସ୍ତ୍ର ଓ ସେଥିରେ ଲେଖା ଯାଇଥିବା ଏହି ପଦଗୁଡ଼ିକ ଦେଖି ଜାଣିଲେ ଯେ ତାଙ୍କର ପ୍ରିୟ କବି କାଳିଦାସ ଇହ ଜଗତରେ ନାହାନ୍ତି ସେ ଗଭୀର ଦୁଃଖ ଅନୁଭବ କଲେ । ଜଗତ ତାଙ୍କୁ ଅନ୍ଧକାର ମୟ ବୋଧ ହେଲା । ଯେଉଁ କବି ସ୍ୱୀୟ ପ୍ରତିଭାର ପ୍ରଦୀପରେ ଭୋଜରାଜା ବିକ୍ରମାଦିତ୍ୟଙ୍କ କୀର୍ତ୍ତିକୁ ଉଜ୍ଜ୍ୱଳ କରିବା ସଙ୍ଗେ-ସଙ୍ଗେ ଭାରତର ଗୌରବ ବିଶ୍ୱରେ ପ୍ରସାରି କରିଥିଲେ ତାଙ୍କୁ ଆଉ କେଉଁଠାରେ ଦେଖିବାକୁ ମିଳିଲା ନାହିଁ । ରାଜା ବିକ୍ରମାଦିତ୍ୟ ସେହି ଅକାଳ ମୃତ୍ୟୁର ତଦନ୍ତ ଚଳାଇ ନିଜେ ଗଭୀର ଦୁଃଖରେ ବୁଡ଼ିଗଲେ । କାଳିଦାସଙ୍କ ମରଣଶରୀର ଆଉ ଏଇ ଧରଣୀରେ ନାହିଁ ସତ କିନ୍ତୁ ତାଙ୍କର ଅମର ଲେଖନୀରୁ ବିସ୍ଫୁରିତ ହୋଇଥିବା ଅମର ଗ୍ରନ୍ଥ ସକଳ ତାଙ୍କର ପ୍ରତିଭା ଦୀପକୁ ସର୍ବଦା ପ୍ରଜ୍ୱଳିତ କରି ରଖିଥିବ ।

—ଃଠଃ—

**ସମାପ୍ତ**